ନେହେରୁ ବାଳ ପୁସ୍ତକାଳୟ

# ରୋହନ୍ତା ଓ ନାନ୍ଦ୍ରିୟ

କୃଷ୍ଣ ଚୈତନ୍ୟ

ଚିତ୍ର : **ପ୍ରଣବ ଚକ୍ରବର୍ତ୍ତୀ,** ଅନୁବାଦ : **ଜ୍ୟୋତ୍ସ୍ନା ମିଶ୍ର**





ପ୍ରଥମ ପ୍ରକାଶ 1972 (ଶକାବ୍ଦ 1893)
ତୃତୀୟ ମୁଦ୍ରଣ 1990 (ଶକାବ୍ଦ 1911)

ମୂଲ୍ୟ : ଟ 6.00
Rohanta & Nandriya (*Oriya*)
ଡାଇରେକ୍ଟର, ନ୍ୟାସ୍ନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ଏ-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ-110016
କର୍ତ୍ତୃକ ପ୍ରକାଶିତ

ଆମ ଭିତରୁ ଅନେକେ ବୁଦ୍ଧଙ୍କ କଥା ଶୁଣିଛନ୍ତି । ବୁଦ୍ଧଙ୍କୁ ସାରା ବିଶ୍ୱର କୋଟି କୋଟି ଲୋକ ମାନବଜାତିର ଜଣେ ଶ୍ରେଷ୍ଠ ଦୟାଳୁ ଓ ଶ୍ରେଷ୍ଠ ଜ୍ଞାନୀ ଗୁରୁ ରୂପରେ ଭକ୍ତି କରିଆନ୍ତି ।

ବୁଦ୍ଧ ବୋଲି ଶବ୍ଦଟି କାହାର ନାମ ନୁହେଁ । ଏହାର ଅର୍ଥ ହେଉଛି 'ଆଲୋକ ପ୍ରାପ୍ତ', ଅର୍ଥାତ୍ ଏପରି ଜଣେ ଯେ କି ଜୀବନର ମାନେ ବୁଝିପାରିଛନ୍ତି ଏବଂ ମନୁଷ୍ୟ କିପରି ଶାନ୍ତି ଓ ସୁଖ ପାଇ ପାରିବ ସେ ନେଇ ଗମ୍ଭୀରଭାବେ ଚିନ୍ତା କରିଛନ୍ତି । ବୁଦ୍ଧଙ୍କର ଅସଲ ନାଁ ଥିଲା ସିଦ୍ଧାର୍ଥ । ସେ ଜଣେ ରାଜପୁତ୍ର ଥିଲେ ଏବଂ ଆଜକୁ ୨୫୦୦ ବର୍ଷ ତଳେ ବଞ୍ଚିଥିଲେ ।

ଦିନେ ଅନ୍ଧାର ରାତିରେ ସେ ତାଙ୍କ ରାଜ-ଉଆସ ଛାଡ଼ି ଚାଲିଯାଇଥିଲେ ଏବଂ ବର୍ଷ ବର୍ଷ ଧରି ଘୁରି ବୁଲିଥିଲେ । ସେ ଯେ ତାଙ୍କ ଘର, ତାଙ୍କ ସ୍ତ୍ରୀ ପିଲା, ବାପମାଆଙ୍କୁ ଭଲପାଉନଥିଲେ ତା ନୁହେଁ—ତା' ହେଲେ ସେ ଏମାନଙ୍କୁ ଛାଡ଼ି ଚାଲିଗଲେ କାହିଁକି ? କାରଣ, ସେ ଏତେ ଦୁଃଖ ଯାତନା ତାଙ୍କ ଚାରିପଟେ ଦେଖିବାକୁ ପାଇଥିଲେ ଯେ ସେଥିରୁ ମୁକ୍ତି ପାଇବାର ଉପାୟ ନପାଇବାଯାଏ ତାଙ୍କୁ ସ୍ୱସ୍ତି ମିଳିଲା ନାହିଁ ।



ସକାଳ ହେଲେ ଫୁଲମାନେ ଫୁଟିଯାଆନ୍ତି ଓ ତାଙ୍କ ଉପରେ କାକର ବିନ୍ଦୁ ପଡ଼ି ହୀରା ପରି ଚକ୍ ଚକ୍ କରୁଥାଏ ସୂର୍ଯ୍ୟକିରଣରେ । କିନ୍ତୁ ସୂର୍ଯ୍ୟାସ୍ତ ବେଳକୁ ଫୁଲମାନେ ମଉଳି ଯାଆନ୍ତି । ବସନ୍ତ ସମୟରେ କେତେ କେତେ ଗଛ ଫୁଲ ଫଳରେ ଭରିଯାଆନ୍ତି, କିନ୍ତୁ ଗ୍ରୀଷ୍ମ ଓ ଶୀତ ଋତୁ ଆସିଗଲେ ସେମାନେ ଶୁଖିଲାହୋଇ ଠିଆ ହୋଇଥାନ୍ତି । ଶିଶୁମାନେ ବଡ଼ ହୋଇ ଯୁବକ ଯୁବତୀ ହୁଅନ୍ତି । ଜୀବନଟା କେତେ ଆନନ୍ଦ କୌତୁକରେ ପୂରିଉଠେ । କିନ୍ତୁ ବୃଦ୍ଧାବସ୍ଥାକୁ କେହି ରୋକି ହୁଏନାହିଁ ଏବଂ ଶେଷକୁ ମନୁଷ୍ୟ, ଖାଲି ମନୁଷ୍ୟ କାହିଁକି, ଜୀବମାତ୍ରେ ମରିଯାଆନ୍ତି ।

ଏଇ ବୋଧହୁଏ ସଂସାରର ନିୟମ, ତାହିଁକି ଦୁଃଖ କଲେ ଚଳିବ କାହିଁ ? କିନ୍ତୁ ଆମେ କଣ ସୁଖ ସନ୍ତୋଷ ଲାଗି ଜଣେ ଆଉ ଜଣକ ପ୍ରତି ଦୟାଳୁ ହୋଇ ରହିବାଲାଗି, ଅନ୍ତତଃ ଯୋଉ କେଇଟା ଦିନ ବଞ୍ଚିବା, ଚେଷ୍ଟା କରିପାରିବା ନାହିଁ ? ଯାହା ଦେଖାଯାଉଛି ମଣିଷ ଏତିକି କରିପାରୁନାହିଁ । ପୃଥିବୀରେ କେତେ ଦୁଃଖ ରହିଛି, ଯାହାର ଅସଲ କାରଣ ହେଉଛି ମଣିଷ ଅକାରଣରେ ହିଁ, କିମ୍ବା ଅତି ବାଜେ କାରଣରେ, ପରସ୍ପରକୁ ଘୃଣା କରନ୍ତି । ଖାଲି ଯେବେ ସେମାନେ ଟିକିଏ କମ୍ ସ୍ୱାର୍ଥପର ହୋଇଆନ୍ତେ ତେବେ ବେଶ୍ ଆପୋଷରେ ରହିଆନ୍ତେ ଏବଂ ପୃଥିବୀଟା କେତେ ଆନନ୍ଦକର ସ୍ଥାନ ହୋଇଆନ୍ତା !

ରାଜପୁତ୍ର ମନୁଷ୍ୟଙ୍କୁ ନିଃସ୍ୱାର୍ଥ ଓ ଦୟାଳୁ କରିବାର ଉପାୟ ଖୋଜି ଲାଗିଲେ । ସେ ଜାଣିଥିଲେ ଯେ, ସେ ଯେବେ ରାଜ ଉଆସର ଆରାମ ଭିତରେ ରହନ୍ତି ତେବେ କଦାପି ଉପାୟ ଖୋଜି ପାଇବେ ନାହିଁ ।

ଯେଉଁ ରାତିରେ ସେ ତାଙ୍କ ଘର ଛାଡ଼ିଲେ, ସେ ଅରକୁଥର ତାଙ୍କ ସ୍ତ୍ରୀଙ୍କ ଆଡ଼କୁ, ତାଙ୍କ ପାଖେ ଶୋଇଥିବା ନିଜର ଶିଶୁପୁତ୍ର ଆଡ଼କୁ ଚାହିଁଥାନ୍ତି । ସେମାନେ ଯୂଇ ଓ ଅନ୍ୟ ଫୁଲ ବିଛା ବିଛଣାରେ ଶୋଇଥାନ୍ତି ।

ତାଙ୍କର କୁନି ପୁଅଟିକୁ ଛାଡ଼ି ଚାଲିଯାଉଛନ୍ତି ଭାବିଲା ବେଳକୁ ତାଙ୍କର କେତେ ଦୁଃଖ ହେଉଥାଏ; ଏପରିକି ମନେହେଉଥାଏ, ସେ ଛୁଆଟିକି ନନେଲେ ସେ ଯାଇ ପାରିବେନ



ପରି ! କିନ୍ତୁ ଝଡ଼ ଭିତରେ ବି ମାଆ ଛୁଆକୁ କୁଣ୍ଢେଇ ଶୋଇଆନ୍ତି, ହାତରେ ସେପରି ତାକୁ ରକ୍ଷାକରିଆନ୍ତି । ରାଜପୁତ୍ର ମନେମନେ କହିଲେ, "ମୁଁ ଯେବେ ଯୁବରାଣୀଙ୍କ ହାତଟି ଦୂଆଇ ନିଏ, ସେ ନିଶ୍ଚୟ ଚେଇଁ ଉଠିବେ ଓ ମୁଁ ଆଉ ଯାଇପାରିବି ନାହିଁ । ମୁଁ ଚାରିଆଡ଼େ ବୁଲି ଯେଉଁଦିନ ମଣିଷର ଦୁଃଖ ଦୂର କରିବାର ଉପାୟ ପାଇଯିବି, ସେ ଦିନ ଫେରିଆସି ମୋ ପୁଅକୁ ଦେଖିବି ।"

କେତେ କେତେ ବର୍ଷ ବୁଲି ବୁଲି, ଚିନ୍ତା କରି କରି ରାଜପୁତ୍ର ଜାଣି ପାରିଲେ ଯେ ମନୁଷ୍ୟର ସୁଖ ଶାନ୍ତି ପାଇବାର ଉପାୟଟି ତାଙ୍କର ସେଇ ବିଦାୟ ନେବାର ରାତିରେ ହିଁ ତାଙ୍କୁ ମିଳିଥିଲା । ସେ ଦେଖିଥିଲେ ଯେ ମାଆର ହାତଟି ଝଡ଼ ଭିତରେ ବି ଛୁଆକୁ ରକ୍ଷାକରୁଥିଲା । କିନ୍ତୁ ସେତେବେଳେ ସେ ଏ ଦୃଶ୍ୟର ପ୍ରକୃତ ଅର୍ଥଟି ବୁଝି ନଥିଲେ । ସେ ଏଥର ବୁଝିଲେ ଏବଂ କହିଲେ, "ମାଆ ଯେମିତି ପୁଅକୁ ରକ୍ଷାକରେ, ସେଇମିତି ସମସ୍ତେ ଯାହାର ଜୀବନ ଅଛି ତାକୁ ରକ୍ଷା କରନ୍ତୁ ।"ଯେବେ ପ୍ରତ୍ୟେକ ଜୀବ ଠିକ୍ ମାଆ ପିଲାକୁ ଦେଖିଲା ପରି ରକ୍ଷା-କରୁଥିବେ, ତାହେଲେ ବଡ଼ମାନଙ୍କର ସଂସାରଟା ବି ପିଲାଙ୍କ ଜଗତ ପରି ଖୁସିଭରା ହୋଇଯିବ । ବୁଦ୍ଧ ବା ଆଲୋକପ୍ରାପ୍ତ ଭାବରେ ସେ ଜୀବ ପ୍ରତି ଅସୀମ ଦୟା ଦେଖାଇ ଗଲେ ଓ ସେ ଯେବେ ମରିଗଲେ ତାଙ୍କ ଦୟା କଥା ଲୋକେ ମନେପକାଇଲେ ।

ତମେ ଜାଣିଥିବ, ସବୁ ଧର୍ମରେ ସାଧାରଣ ବିଶ୍ୱାସ ହେଲା ଯେଉଁମାନେ ଭଲ କାମ କରିବେ ସେମାନେ ସ୍ୱର୍ଗକୁ ଯାଇ ଚିରଦିନ ଲାଗି ସେଠି ସୁଖରେ ରହନ୍ତି । କିନ୍ତୁ ଚାରିଆଡ଼େ ଏହି ବିଶ୍ୱାସ ବ୍ୟାପିଗଲା ଯେ ବୁଦ୍ଧ କେବେ ସ୍ୱର୍ଗସୁଖ ଭୋଗ କରିବାକୁ ଚାହୁଁ ନଥିଲେ ।



ସ୍ୱରୂପ ପ୍ରରୂପ ଧରି ଜୀବମାନେ ଜନ୍ମ ହୋଇ ସୃଷ୍ଟିଥିବେ ଏବଂ ତାଙ୍କର ଦୁଃଖକଷ୍ଟବେଳେ ବୁଦ୍ଧଙ୍କର ସାହାଯ୍ୟ ଲୋଡ଼ୁଥିବେ । ତେଣୁ କିମ୍ବଦନ୍ତୀ ଅଛି ଯେ ସେ ବାରମ୍ବାର ତାଙ୍କର ସମଦୁଃଖୀମାନଙ୍କୁ ସାହାଯ୍ୟ କରିବା ଲାଗି ପୃଥିବୀକୁ ଫେରି ଆସନ୍ତି । ଏପରିକି ରାଜପୁତ୍ର ସିଦ୍ଧାର୍ଥ ଭାବରେ ଆସିବା ଆଗରୁ ସେ ଅନେକଥର ଅବତାର ହୋଇଥିଲେ । ସେ କପର କେତେବେଳେ ମଣିଷ, କେତେବେଳେ କେଉଁ ଅନ୍ୟ ଜନ୍ତୁ ହୋଇ ବିଭିନ୍ନ ରାଜ୍ୟରେ ଜନ୍ମ ଗ୍ରହଣ କରି ଯୁଗେ ଯୁଗେ ଦୁଃଖୀମାନଙ୍କୁ ରକ୍ଷା କରିଥିଲେ, ପ୍ରତ୍ୟେକ ଗପ ହେଲା ଗୋଟିଏ ଗୋଟିଏ "ଜାତକ" (ଜନ୍ମ); କାରଣ ସେଗୁଡ଼ିକ ବୁଦ୍ଧଙ୍କର ଗୋଟିଏ ଗୋଟିଏ ଜନ୍ମର ବୃତ୍ତାନ୍ତ । କାଳକ୍ରମେ ଏଇ ଗପ ସବୁ 'ପାଲି' ଭାଷାରେ ଲେଖା ହୋଇଗଲା । 'ପାଲି' ଆଗକାଳେ ମଗଧ (ବିହାର)ର କଥିତ ଭାଷା ଥିଲା ଏବଂ ଏହାହିଁ ପ୍ରଥମ ବୁଦ୍ଧଧର୍ମର ଗ୍ରନ୍ଥମାନଙ୍କର ଭାଷା ହେଲା ।

'ପାଲି' ଜାତକରେ ୫୦୦ରୁ ଅଧିକ ଗପ ଅଛି । ଏ ସବୁ ଗୋଟାଏ ରତ୍ନଭଣ୍ଡାର । ପ୍ରଥମରେ ଏଗୁଡ଼ିକ ଚମତ୍କାର ଗପ; ସେଗୁଡ଼ିକ ପାଲିରୁ ସଂସ୍କୃତଭାଷାରେ ଅନୂଦିତ ହେଲେ ଏବଂ ପରିବର୍ଦ୍ଧିତ ବି ହେଲେ । ଦୁଇରେ ଭାରତର ମୂର୍ତ୍ତି ଓ ସ୍ଥାପତ୍ୟ ଦେଇ ଶିଳ୍ପୀମାନେ ସେହି ଗଳ୍ପଗୁଡ଼ିକୁ ରୂପ ଦେଲେ ସାଞ୍ଚି, ଭାରହୁତ ଓ ଅମରାବତୀ ଆଦି ବୁଦ୍ଧଧର୍ମର ବଡ଼ ବଡ଼ ପୀଠମାନଙ୍କରେ । ତିନିରେ ଚିତ୍ରକଳା ମଧ୍ୟରେ ରୂପରଙ୍ଗ ଦେଇ ଏହିସବୁ ଗଳ୍ପ ଫୁଟିଉଠିଲେ ଶିଳ୍ପୀର ତୂଳିରେ । ପ୍ରାୟ ସକଳ ଜାତକଗଳ୍ପ ଅଜନ୍ତା ଗୁମ୍ଫାରେ ଅଙ୍କିତ ହୋଇଛି ।

ସେଥିରୁ ଦୁଇଟି ଗପ ବର୍ତ୍ତମାନ ତୁମକୁ କୁହାଯିବ—ରୋହନ୍ତା ନାମକ କଳା ହରିଣ କଥା ଓ ନାନ୍ଦ୍ରିୟ ନାମକ ମାଙ୍କଡ଼ କଥା । ସେମାନଙ୍କର ଦୟା ଓ ସ୍ୱାର୍ଥତ୍ୟାଗ କଥା ଯେତେବେଳେ ତୁମେ ପଢ଼ିବ, ତୁମ ମନରେ ଆଉ ସନ୍ଦେହ ରହିବନି ଯେ ସେମାନେ ସେହି ଦୟାଳୁ ବୁଦ୍ଧଙ୍କ ଅବତାର, ସେହି ବୁଦ୍ଧ ଯେ କି ପୃଥିବୀକୁ ସୁଖମୟ, କରୁଣାମୟ କରିବାଲାଗି ଯୁଗେ ଯୁଗେ ଅବତାର ଗ୍ରହଣ କରନ୍ତି ।

# କଳା ହରିଣ ରୋହନ୍ତା

ଅନେକ ଯୁଗ ତଳେ ଉତ୍ତର-ପ୍ରଦେଶର ଏକ ବଣପାଖରେ ସମତଳ ସ୍ଥାନରେ କଳା ହରିଣଟିଏ ଜନ୍ମହୋଇଥିଲା । ତା ବାପ ମା ତା ନାଁ ଦେଇଥିଲେ ରୋହନ୍ତା ।

ତୁମେ କଳା ହରିଣ ଦେଖିଛ କି ? ବୋଧେ ସବୁଠୁଁ ସୁନ୍ଦର ହରିଣ ସେ । ବଣଜନ୍ତୁ ଭାବରେ ତାଙ୍କୁ ଖାଲି ଭାରତରେ ଦେଖିବାକୁ ମିଳେ, ଆଉ କୋଉଠି ନାହିଁ । ଏହି ଜାତିର ବଡ଼ ଅଣ୍ଡିରା ହରିଣର ଚମଡ଼ା ଉପରେ ଅତି ଗାଢ଼ କଳା ରଙ୍ଗର ସୁନ୍ଦର ଲୋମ ଥାଏ, ପେଟ ତଳଟା ଧଳା ଓ ଅତି ଚମତ୍କାର ମୋଡ଼ା ମୋଡ଼ା ଶିଙ୍ଘ ହୁଏ ତାକୁ ଖୁବ୍ ସୁନ୍ଦର ମାନେ । ମାଈ ହରିଣ ଦେଖିବାକୁ ଶ୍ରେଷ୍ଠ ଓ ତାର ଶିଙ୍ଘ ନଥିଲେ ବି କିଛି କମ୍ ସୁନ୍ଦର ନୁହେଁ । ତାର ରଙ୍ଗ ଈଷତ୍ ହଳଦୀ ମିଶା ବାଦାମୀ ।

ରୋହନ୍ତା ବି ଛୋଟବେଳେ ମାଟିଆ ରଙ୍ଗର ଥିଲା । କିନ୍ତୁ ଦୁଇ ବର୍ଷ ବୟସରେ ତା ଲୋମ ଚିକ୍‌କଣ କଳା ହେବାକୁ ଆରମ୍ଭ କଲା । ତା ବାପ ମାଆ ବି ଖୁସୀ, କାହିଁକନା ଦେହର ରଙ୍ଗ ଏଇ ବଦଳିବାର ମାନେ ରୋହନ୍ତା ଏଇଲା ବଡ଼ ହୋଇଗଲାଣି, ତା ନିଜ କଥା ବୁଝିବାର ଲାଏକ ହେଲାଣି ।

ରୋହନ୍ତା ଓ ତା ବାପ ମାଆ ଯୋଉ ଦଳରେ ରହୁଥିଲେ ତହିଁରେ ଶହେ ସରିକି ହରିଣ ଥିଲେ । ପ୍ରତିବର୍ଷ କିଛି କିଛି ବୁଢ଼ା ହରିଣ ମରନ୍ତି । କିନ୍ତୁ ସଂଖ୍ୟା ଯାହା ଥିଲା ତାହା ହିଁ ରହେ, କାହିଁକନା, ନୂଆ ଛୁଆ ବି ଜନ୍ମ ହୁଅନ୍ତି ।



ମାଈ ହରିଣ ବେଳକେ ଗୋଟିଏ କି ଦୁଇଟି ଛୁଆ ଦିଏ । ଜନ୍ମ କଲା ପରେ ଛୁଆଙ୍କୁ ଲମ୍ବା ଘାସ ଆଢୁଆଳରେ କିଛି ଦିନ ଲୁଚାଇ ରଖେ । ସେମାନେ ଶୀଘ୍ର ବଳୁଆ ହୋଇ ଯାଆନ୍ତି ଏବଂ ଦଳରେ ଯୋଗ ଦିଅନ୍ତି ।

ସେହନ୍ତା ବେଶ୍ ବୁଦ୍ଧିଆ ଜୁଆନଟିଏ ହୋଇ ଉଠିଲା ଏବଂ ଜଲ୍‌ଦି ଜଲ୍‌ଦି ଦଳର ଜୀବନଯାତ୍ରା ବିଷୟରେ ପାରଗ ହୋଇଉଠିଲା । ଦଳଟି ଘାସ ଖାଇ ବଞ୍ଚେ; ନାହିଁ ଯେବେ ଜଙ୍ଗଲ ପାଖରେ ବିଲବାଡ଼ି ଥାଏ, ସେଠିକି ଯାଇ ଫସଲ ବି ଖାଆନ୍ତି । ଘାସ ପଡ଼ିଆ ଥିବା ବଡ଼ ବଡ଼ ଜଙ୍ଗଲକୁ ପଶିଯାଇ ସେମାନେ ଚରନ୍ତି । ଶତ୍ରୁ ଉପସ୍ଥିତ ହେଲେ ବଡ଼ ବଡ଼ ଘାସ ଆଢୁଆଳରେ ସେମାନେ ଲୁଚିଯାଆନ୍ତି । ଦିପହରଯାଏ ସେମାନେ ଚରନ୍ତି, ପୁଣି ଅପରବେଳା ଚରନ୍ତି । ଖରାବେଳଟାରେ ଗରମ ଯୋଗୁ ସେମାନେ ଶୋଇ ବିଶ୍ରାମ ନିଅନ୍ତି । ଶୁଣିବାର ଶକ୍ତି ଓ ଶୁଙ୍ଘିବାର ଶକ୍ତି ତାଙ୍କର ଏତେ ପ୍ରଖର ନୁହେଁ; କିନ୍ତୁ ଦେଖିବା ଶକ୍ତି ପ୍ରବଳ । ଏହି ପ୍ରବଳ ଦୃଷ୍ଟିଶକ୍ତି ସାଙ୍ଗକୁ ତୀବ୍ର ଗତିବେଗ ତାଙ୍କୁ ବିପଦରୁ ରକ୍ଷା କରେ । କଳା ହରିଣ ପୃଥିବୀର ସବୁଠୁଁ ତେଜ ଗତିଶାଳୀ ଜନ୍ତୁଙ୍କ ଭିତରେ ଗଣାହୁଏ । ଖୁବ୍ ଦୂର ବାଟଯାଏ ସେ ଘଣ୍ଟାକୁ ୭୫ କିଲୋମିଟରଯାଏ ଗତିବେଗ ରଖି ଦଉଡ଼ି ପାରେ । ହଠାତ୍ ଡିଆଁମାରି ସେ ଦଉଡ଼ା ଆରମ୍ଭ କରେ । ଆଗ ସେ ପ୍ରାୟ ସଳଖ ହୋଇ ଉପରକୁ କୁଦି ଯାଏ । ଶୂନ୍ୟକୁ ବେଶ୍ କିଛି ମିଟର ଡେଇଁପଡ଼ି ପ୍ରଥମ କେତେ କଦମ୍ ପରେ ତୀବ୍ରବେଗରେ ଛୁଟିଯାଏ । ପଳେଇଯାଉଥିବା ହରିଣ ପଲକୁ ଦେଖିଲେ ଆଖି ଲାଖିଯାଏ । ଜନ୍ତୁଗୁଡ଼ାକ ଯେମିତି ଉଡ଼ି ଯାଆନ୍ତି ଅବଲୀଳାକ୍ରମେ, ଅତି ସୁନ୍ଦର ଭାବେ ।



ବେହଲ୍ଲାର ପିଲାଦିନେ ଗୋଟିଏ ଘଟଣାରୁ ତାର ତୀକ୍ଷ୍ଣ ବୁଦ୍ଧିର ପରିଚୟ ମିଳିଥିଲା । ଜଙ୍ଗଲରେ ତ ବଣୁଆ ଆମ୍ବ ଗଛ ଥାଏ—ଚଢ଼େଇ ଖୁମ୍ପିଥିବା ପାଚିଲାଆମ୍ବ ଗଛ ମୂଳେ ପଡ଼ିଥାଏ । ଲୁଆଣିଆଁ ଡାଳ ହୋଇଥିଲେ ହରିଣ ପଛ ଗୋଡ଼ରେ ଠିଆ ହୋଇ ଗଛରୁ ବି ଆମ୍ବ ଖାଇପାରନ୍ତି । ଗୋଟିଏ ବାଣୁଆ ବରାବର ଏଇ ଜଙ୍ଗଲକୁ ଆସେ । ଯେଉଁ ଯେଉଁ ଥର ସେ ହରିଣର ଖୁରା ଚିହ୍ନ ଦେଖିବାକୁ ପାଏ, ସେ ସେଇ ପାଖଆଖ ଗଛ ଉପରେ ମଞ୍ଚାଟିଏ ବାନ୍ଧି, ପତ୍ରର ଆଢ଼ୁଆଳ ଭିତରୁ ଟାକି କରି ବସିଥାଏ । ହରିଣଟିଏ ପାଖକୁ ଆସିବାର ଦେଖିଲେ ବର୍ଚ୍ଛାଟି ଲକ୍ଷ କରି ଛାଡ଼ିଦିଏ ଆଉ ହରିଣ ଶିକାର ହୋଇଯାଏ । ସେଇ ଜୀବଯାକଙ୍କ ମାଉଁସ ଓ ଚମଡ଼ା ବିକି ସେ ପେଟ ପୋଷେ ।

ଦିନକର ବେହଲ୍ଲା ଦେଖିଲା ଗୋଟିଏ ଲୁଆଣିଆଁ ଆମ୍ବଗଛରେ ଆମ୍ବ ଲଦିହୋଇଛି । ସୁସ୍ଥସବଳ ଯୁଆନ୍ ହୋଇଥିବାରୁ ତା ପେଟରେ ଭୋକ ବି ଖୁବ୍ । ପେଟ ପୂରାଇ ସେ ଆଗ





ଖାଇଲା । କିନ୍ତୁ ଆହୁରି ଅନେକ ଆମ୍ବ ବାକିଥିଲା; ତେଣୁ ସେ ଠିକ୍ କଲା ପରଦିନ ଆସି ଖାଇବ ।

ସେ ଯିବା ପରେ ବାଣୁଆ ସେବାଟେ ଯାଉ ଯାଉ ବୋହଲ୍ଲାର ଚାଳା ଖୁବ୍ ଚିହ୍ନ ଦେଖିଲା । ସେ ଗଛରେ ଗୋଟିଏ ମଞ୍ଚା କରି ଘରକୁ ଗଲା । ପରଦିନ ସକାଳୁ ଶୀଘ୍ର ଖାଇ ପିଇ ସେ ଜଲ୍‌ଦି ଜଙ୍ଗଲକୁ ବାହାରିଗଲା । ଗଛ ଉପରକୁ ଚଢ଼ି, ହାତ ପାଖରେ ବନ୍ଧୁକଟା ଥୋଇ ସେ ଅପେକ୍ଷା କରି ବସିଲା । ଅନେକ ବେଳଯାଏ କିଛି ହେଲାନି । ତା ପରେ ସେ ଦେଖି ଖୁସି ହେଲା ଯେ ଗୋଟିଏ ଗଜା ମିରିଗ ସେ ଆଡ଼କୁ ଆସୁଛି । ମିରିଗଟି ଆଉ କେହି ନୁହେଁ, ବୋହଲ୍ଲା ।

କିନ୍ତୁ ବାଣୁଆ ଯେମିତିକା ହରିଣର ଖୁରା ବାରିପାରେ, ବୋହଲ୍ଲା ବି ଠିକ୍ ସେଇମିତିକା ବାଣୁଆର ପାଦଚିହ୍ନ ବାରିପାରେ । ଯଦିଓ ବାଣୁଆ ଖୁବ୍ ହୁସିଆର, ତଥାପି ଗୋଟାଏ ଦୁଇଟା ଚିହ୍ନ ରହିଯାଇଥିଲା । ଉପରକୁ ଚାହିଁ ବୋହଲ୍ଲା ଦେଖିଲା ଗଛଟାର ଡାଳପତ୍ର ଟିକିଏ ଅବାଗିଆ ଦେଖାଯାଉଛି, ଯେମିତି କେହି ସେଗୁଡ଼ାକୁ ଏପଟ ସେପଟ କରିଦେଇଛି । ଗଛଠୁ ଟିକିଏ ଦୂରରେ ସେ ଅଟକି ଠିଆହେଲା । କାରଣ ତାକୁ ଲାଗିଲା ଏଥିରେ କିଛି ବିପଦ ଅଛି ।

ବାଣୁଆଟି ବଡ଼ ଆବେଗରେ ଅଧୈର୍ଯ୍ୟ ହୋଇ ହରିଣଟି ଲାଗି ଅପେକ୍ଷା କରୁଥାଏ, କେତେବେଳେ ସେ ପାଖକୁ ଆସିବ । ବୋହଲ୍ଲା ଯେତେବେଳେ ସେଇଠି କାଠପରି ଠିଆ-



ହୋଇ ରହିଲା, ବାଣୁଆ ଗୋଟିଏ ପାଚିଲା ଆମ୍ବ ଧରି ଏମିତି ବାଗରେ ତା ଆଡ଼କୁ ପକାଇଲା ଯେ ଆମ୍ବଟି ତଳେ ପଡ଼ି ଯେମିତି ବ୍ରେହନ୍ଲା ଆଡ଼କୁ ଗଡ଼ିଯାଏ । ତାର ଆଶା ପାଚିଲା ଆମ୍ବଟିଏ ଦେଖିଲେ ହରିଣ ଆମ୍ବ ଲୋଭରେ ପାଖେଇ ଆସିବ ପରା !

ଆମ୍ବଟି ଯେତେବେଳେ ତା ଆଡ଼କୁ ଗଡ଼ି ଆସିଲା, ବ୍ରେହନ୍ଲା ନିଶ୍ଚିତ ରୂପେ ଜାଣିଲା ଯେ ଏଥି ଭିତରେ କିଛି ଗୋଳମାଳ ରହିଛି । ଏଥର ସେ ପଛଆଡ଼କୁ ନଠେଇକରି ଅନେଇଲା— ବିଶେଷରୂପେ ଯେଉଁ ଜାଗାଗୁଡ଼ାକ କାଲିଠାରୁ ଅଲଗା ଅଲଗା ଦେଖାଯାଉଥାଏ । ପ୍ରଥମେ ପ୍ରଥମେ ତାକୁ ବିପଦ ଅପଦର କିଛି ଚିହ୍ନ ଦିଶିଲାନି; କିନ୍ତୁ ତା ଭାଗ୍ୟକୁ ଦମକାଏ ପବନ ବୋହିଗଲା ସେ ଜଙ୍ଗଲ ବାଟେ ଆଉ ପତ୍ରଗୁଡ଼ାକ ଟିକିଏ ଘିରି ଘିରି କରିଦେଇଗଲା । ସେଇ ଦମକାକ ପବନ—କେତେ ପଲକ ରହିଥିବ କି ନାହିଁ—କିନ୍ତୁ ସେତିକି ଯଥେଷ୍ଟ । କାହିଁକି ନା, ସେଇ ସମୟ ଭିତରେଇ ବ୍ରେହନ୍ଲା ବାଣୁଆକୁ ଚଟ୍‌କରି ଦେଖିପକାଇଥିଲା ।

ସେ ଯେ ଶତ୍ରୁକୁ ଦେଖିଛି, ଏମିତି କୌଣସି ଲକ୍ଷଣ ସେ ଦେଖାଇଲା ନାହିଁ । ସେ ବଡ଼ ପାଟିରେ କହିଲା, "ଗଛଭାଇ ! ଆଜଯାକେ ତମେ ଫଳଗୁଡ଼ିକ ଜମି ଉପରେ ପକେଇ ଦଉଥିଲ; କିନ୍ତୁ ଆଜି ମୋ ଉପରକୁ ଟେକା ପକେଇଲା ପରି ଫଳ ଫୋପାଡ଼ୁଛ । ତା ମାନେ ତମେ ମତେ ଆଉ ପସନ୍ଦ କରୁନ । ହଉ, ମୁଁ ଯାଉଚି ଆଉ କୋଉ ଗଛ ଦେଖିବି, ଯିଏ ଟିକିଏ ଆଦର କରି ପାଖକୁ ଡାକିବ !"

ବାଣୁଆ ଠିକ୍ ବୁଝିଲା ଯେ ହରିଣ ଛୁଆଟା ତାକୁ ଖତେଇ ବଗୁଲେଇ ଏମିତି କହୁଛି । ସେ ରାଗିଯାଇ ବର୍ଚ୍ଛାଟା ତା ଆଡ଼େ ପକେଇଲା; କିନ୍ତୁ ବ୍ରେହନ୍ଲା ବର୍ଚ୍ଛାର ଲକ୍ଷ୍ୟ ଠାରୁ ବହୁତ ଦୂରକୁ ଚାଲିଯାଇଥିଲା । ବର୍ଚ୍ଛାଟା ଅତି ନିରାପଦ ଜାଗାରେ ମାଟିରେ



ପଡ଼ିଲା । ବାଣୁଆକୁ ଅଦ୍ଭୁତ ଚଢେଇବାକୁ ଚାଲକ୍ ହରଣକୁ ଆଣ୍ଟା। ଦାନ୍ତରେ ବର୍ଛାଟାକୁ କାମୁଡ଼ି ଧରି ଡିଆଁ ମାରି ଚାଲିଗଲା ।

ଗୋହଲ୍ଲା ଆଉ ଥରେ ଧରାପଡ଼ିଥିଲା, କିନ୍ତୁ ଏତେ ସହଜରେ ଉଦ୍ଧାର ପାଇ ନଥିଲା । ସେ ଜଙ୍ଗଲରେ ବୁଲୁ ବୁଲୁ ଗୋଟିଏ ଆଦିବାସୀର ଫାଶରେ ପଡ଼ିଗଲା । କ୍ଷଣକ ଲାଗି ସେ ଡରିଯାଇଥିଲା । ତା ପରେ ଖୁବ୍ ଚେଷ୍ଟା କରି, ଥଣ୍ଡା ମଥା ନେଇ ସେ ସେଠୁ ମୁକୁଳିବାର ଉପାୟ ଖୋଜିବାକୁ ଆରମ୍ଭ କଲା । କିଛି ସମୟ ପରେ ତାକୁ ଗୋଟେ ଉପାୟ ଦିଶିଲା ।

ସେ ଜମାରୁ ଟାଣି ଓଟାରି ହେଲାନି, କାରଣ ତାକୁ ଜଣାଥିଲା ଯେ ସେ ଯେତିକି ଟାଣି ଓଟାରି ହବ, ଫାଶଟା ସେତିକି ଭିଡ଼ି ହୋଇଯିବ ଆଉ ସେ ସେତିକି ନିରୁପାୟ ହୋଇଯିବ । ସେ ତା ଖୁରା ପାଖରେ ମାଟିଯାକ ଆମ୍ବୁଡ଼ି ଚାରିଆଡ଼େ ଘାସ ମାଟି ଉଖାରି ପକାଇଲା । ତା ପରେ ସେ ଅଣେଇ ହେଇ, ଲମ୍ବ ହୋଇ ଶୋଇଗଲା । ଦେହଟା ଲଠିପରି କରିଦେଲା । ସେ ଆଖି ବୁଜି ଦେଲା, ମୁଣ୍ଡଟା ଗୋଟେ ପଟକୁ ଲଟକେଇ ଦେଇ ଜିଭ କାଢ଼ି ରଖିଲା । ଲଳ ବୋହି ବୋହି ଦେହଟା ଯାକ ଓଦା ସରସର ହୋଇଗଲା । ଯା ଦେଖି ଗୁଡ଼େ ମାଛି ଭଣ ଭଣ କରି ତା ଉପରେ ବସିଲେ । ତାର କାଠପରି ଦେହ ଦେଖି କେଇଟା କାଉ ବି ଉଡ଼ିଆସି ତା ଉପରେ ବସିପଡ଼ିଲେ ।

କେତେ ବେଳ ଗଲା । ଉପରଓଳିଆ ଅଢ଼ବାଘୀଟି ଆସିଲା କଣ ଫାଶରେ ପଡ଼ିଚ ଦେଖିବାକୁ । ଦୂରରୁ ସେ ଯେମିତି ଦେଖିଲା ଯେ ଫାଶରେ ହରିଣଟାଏ ପଡ଼ିଛି, ଜବର ଖୁସିଟାଏ ହୋଇଗଲା; କିନ୍ତୁ ପାଖକୁ ଆସି ଦେଖିଲା ଯେ ଘଟଣା ସେମିତି କିଛି ସୁବିଧାର ନୁହେଁ । ହରିଣର ଅଚଳ ଦେହଟା ଉପରେ କାଉ ବସିଛନ୍ତି, ଚାରିଆଡ଼ ମାଛି ଭଣ ଭଣ । ଜନ୍ତୁଟାର ମରଣ ବେଳର ଛଟର ପଟର ଯୋଗୁ ଚାରିକଡ଼େ ମାଟି ଆମ୍ବୁଡ଼ା ହୋଇ ରହିଛି । ସେ ପାଖକୁ ଯାଇ ହରିଣର ଫଚିଆରେ ଗୋଇଠାଏ ମାରିଲା । ହରିଣ ବଞ୍ଚିଥିବାର କିଛି-ହେଲେ ଲକ୍ଷଣ ଦେଖା ଗଲା ନାହିଁ । "ମୋ ଭାଗ୍ୟ ଖରାପ," ବାଘୁଆ ମନେ ମନେ କହିଲା । "ହରିଣଟା ବୋଧେ ସକାଳୁ ଫାଶରେ ପଡ଼ିଛି, ଛଟରପଟର ହେଇକରି ଫାଶଟା ତା ବେକରେ ଜୋର୍‌ରେ ଆଣ୍ଠି ହୋଇଯାଇଛି ଓ ସେ ମରିଯାଇଛି । ସେ ଖରାପ ହେବାକୁ ବସିଲାଣି, ଘରକୁ ନେଲାଯାକେ ଆଉ ସେ ମାଂସ ଖାଇବାଯୋଗ୍ୟ ହବନି । ଏଇଠେଇଁ ତାକୁ କାଟି ଦେବି; ଏଠି କିଛି ଖାଇବି, ବାକିଟା ଘରକୁ ବାନ୍ଧି ନେବି ।" ଏହା କହି ସେ ଫାଶଟା ଫିଟେଇପକେଇଲା । ଜନ୍ତୁଟାକୁ ସେଇଠି ଛାଡ଼ିଦେଇ ନିଆଁ ଜାଳିବା ଲାଗି କିଛି



କାଠ ଓ ଶୁଖିଲା ପତ୍ର ଗୋଟେଇ ଆଣିବାକୁ ବାହାରିଗଲା । ସେ ଯେମିତି କିଛି ଦୂରକୁ ଚାଲିଯାଇଛି, ସ୍ରେହନ୍ସା ଠିଆ ହୋଇ ପଡ଼ିଲା ଓ ତୀରବେଗରେ ତା ଦଳ ଆଡ଼କୁ ଦଉଡ଼ି ପଳାଇଗଲା ।

ବଡ଼ ହେଉ ହେଉ ଏଇମିତି ଘଟଣା ଗୁଡ଼ିକରୁ ସ୍ରେହନ୍ସା ଶିଖିଲା ଯେ ଦସ୍ତରହିବାଟା ଯଦିଓ ବେଶ୍ ମଜା, ତେବେ ଜୀବନରେ ବିପଦ ଆପଦ କିଛି କମ୍ ନୁହେଁ । ଏଇସବୁ ବିପଦ ଆପଦକୁ ସବୁବେଳେ ଏକୁଟିଆ ସମ୍ଭାଳି ହେବ ନାହିଁ । ସାଙ୍ଗ ସାଥି ଥିଲେ ସେମାନେ ବି ବିପଦ ଆପଦରେ ପାଖରେ ଠିଆହେବେ, ତାଙ୍କ ବିପଦ ଆପଦକୁ ବି ସାହାଯ୍ୟ କରିହେବ ତା ବଦଳରେ ।

ଲମ୍ବ ଲମ୍ବ ଘାସରେ ଭରପୂର ଯେଉଁ ଅଞ୍ଚଳରେ ସ୍ରେହନ୍ସାର ଦଳଟି ରହୁଥାଏ, ତା ପାଖ ଜଙ୍ଗଲରେ ଗୋଟିଏ କାଠଖୁମ୍ପା ଚଢ଼େଇ ବସା କରିଥାଏ ଗୋଟିଏ ଡେଙ୍ଗା ଗଛର ଉପର ଡାଳରେ । କାଠଖୁମ୍ପାର ବସା ପାଖରେ ଗୋଟିଏ ଛୋଟିଆ ଝୁବି ଗଡ଼ିଅ; ତହିଁରେ ଥାଏ କଇଁଛଟିଏ । ଟିକଏ ଦୂରରେ ଗୋଟିଏ ବଡ଼ ପୋଖରୀ । ସେଇ ପୋଖରୀକି ହରିଣ ଦଳଟି ପ୍ରତିଦିନ ସନ୍ଧ୍ୟାରେ ପାଣି ପିଇବାକୁ ଆସେ । କିନ୍ତୁ ସ୍ରେହନ୍ସାର ପସନ୍ଦ ସେଇ ଝୁବି ଗଡ଼ିଆଟି, କାହିଁକିନା ସେଠିକି ଆସିଲେ ସେ କଇଁଛ ସାଙ୍ଗରେ ଗପସପ ହୋଇପାରିବ । କାଠଖୁମ୍ପା ବି ତଳେକୁ ଉଡ଼ିଆସି ତାଙ୍କ ସାଥିରେ ଯୋଗଦିଏ । ଏମିତି, ସେ ତିନିହେଁ ଘନିଷ୍ଠ ସାଙ୍ଗ ହୋଇଗଲେ ।

ଦିନକର, ଗୋଟାଏ ବାଣୁଆ ସେ ବାଟେ ଯାଉଁ ଯାଉଁ ଦେଖି ପକେଇଲା ସ୍ରେହନ୍ସାର ଖୁରା ଚିହ୍ନ ସେଇ ଝୁବି ଗଡ଼ିଆ ଆଡ଼କୁ ପଡ଼ିଛି । ବାଣୁଆ ସେବାଟେ କେଇ ହପ୍ତା ଆଗରୁ ବି ଯାଇଥିଲା; କିନ୍ତୁ ସେତେବେଳେ ତ କୌଣସି ଜଙ୍ଗଲୀ ଜନ୍ତୁର ଖୁରା ଚିହ୍ନ ସେଠି ଦେଖିବାକୁ



ପାଇ ନଥିଲା ! ତା ମାନେ ଏବେ ହାଲ୍ ଗୋଟାଏ ହରିଣ ଏଠିକି ପାଣି ପିଇବାକୁ ବରାବର ଆସୁଛି । ତେଣୁ ସେ ଚମଡ଼ାର ଗୁଣ ଦେଇ ଗୋଟିଏ ଫାଶ ବସେଇ ବାଟେ ବାଟେ ବାହାରି ଗଲା । କଇଁଛ ସେତେବେଳକୁ ଛୋଟ ଗଡ଼ିଆର ତଳ ଆଡ଼େ ଶୋଇଥିବାରୁ ବାଣୁଆ ଫାଶ ବସାଇବା ଦେଖିପାରିଲାନି ।

ସନ୍ଧ୍ୟାବେଳକୁ ରେହନ୍ୱା ଛୋଟ ଗଡ଼ିଆକୁ ଆସିଲା ଆଉ ଫାଶରେ ଅଟକିଗଲା । ତା ପାଟି ଶୁଣି ସାଙ୍ଗେ ସାଙ୍ଗେ ତା ସାଙ୍ଗ ଦୁଜଣ ବାହାରି ଆସିଲେ । କଇଁଛ ଛୋଟ ଗଡ଼ିଆ କୂଳକୁ ଚଢ଼ି ଆସିଲା ଆଉ କାଠଖୁମ୍ପା ତଳକୁ ଉଡ଼ି ଆସି ଗୋଟିଏ ପଥର ଉପରେ ବସି ପଡ଼ିଲା । କାଠଖୁମ୍ପା କଇଁଛକୁ କହିଲା, "ସାଙ୍ଗ, ତମର ତ ଦାନ୍ତ ଖଡ଼କ ଖୁବ ଟାଣ । ଫାଶଟା କାଟିପକାଅ । ଚମଡ଼ା ଗୁଣଟା ଖୁବ୍ ମଜବୁତ୍ ଦେଖାଯାଉଛି । ସେଥିକୁ କାଟିବାକୁ ହୁଏତ ଡେରି ବେଳ ଲାଗିବ, ତମକୁ ଦାନଟା ସାରା ଲାଗିଯିବ କି କଣ ! ସେ ଭିତରେ ମୁଁ ଦେଖୁଛି କଣ କଲେ ବାଣୁଆଟାକୁ ଅଟକେଇ ପାରିବି — ତା ହେଲେ ତମକୁ ସମୟ ମିଳିବ ।

କାଠଖୁମ୍ପା ବାଣୁଆର କୁଡ଼ିଆକୁ ଉଡ଼ିଗଲା । କୁଡ଼ିଆଟି ଜଙ୍ଗଲ ପାଖରେ ସମତଳ ଜାଗାରେ ଥାଏ । ସେଠି ସେ ସଢସାରା ତା ଘର ଆଗର ଗୋଟିଏ ଗଛରେ ଅନସା





କଣ ବସିଲା । ଶେଷର ବେଳକୁ ବାଣୁଆ ହାତରେ ଛୁରି ନେଇ ବାହାରିଲା । କାଠଖୁମ୍ପା ଯେମିତ ତାକୁ ଦେଖିଛି ସିଧାସଳଖ ତା ମୁହଁଆଡ଼କୁ ଦୋଦାଳି ଗୁଡ଼ା ଉଡ଼ିଗଲା । ତା ଡେଣା ଦେଇ ସେ ବାଣୁଆକୁ ପିଟିଲା ଆଉ ତା ଉପରେ ହଗିଦେଲା । ବାଣୁଆଟାର ପୁଣି ଅନୁକୂଳ ବଦଅନୁକୂଳ ଉପରେ ଖୁବ୍ ବିଶ୍ୱାସ । ଅନୁକୂଳ କଲାବେଳକୁ ଚଢ଼େଇ ଗୁହରେ ଅପବିଷ ହେବାଟା ତାକୁ ଲାଗିଲା ବଡ଼ ବଦଅନୁକୂଳିଆ । ସେଇଠୁ ସେ ଠିକ୍‌କଲା ଆଜ ଏ ଓଳକ ସେ ବାହାରିବ ନାହିଁ ।

ଉପରଓଳିଆ ସେ ପୁଣି ବାହାରିବାକୁ ଠିକ୍ କଲା ଆଉ ଝରକା ବାଟରେ ଚଢ଼େଇଟା ଅଛି କି ନାହିଁ ଦେଖିବାକୁ ଉଙ୍କି ମାରିଲା; କିନ୍ତୁ କାଠଖୁମ୍ପା ସେଇଠି ବସିଥିଲା ଆଉ ଲୋକଟା ଉଙ୍କି ଦେବାର ଦେଖିନେଲା । ବାଣୁଆ ଫନ୍ଦି କଲା, ବଦଅନୁକୂଳିଆ ଚଢ଼େଇଟାକୁ ଠକି ପଛ-କବାଟବାଟେ ବାହାରିଯିବ । କିନ୍ତୁ ଗୁଲକ୍ କାଠଖୁମ୍ପା ତା ଫନ୍ଦି ଫିକର ଠିକ୍ ବୁଝି-ପାରିଥିଲା । ତେଣୁ ବାଣୁଆ ଯେତେବେଳେ ପଛ କବାଟ ଦେଇକରି ବାହାରିବାକୁ ଯାଉଥିଲା, କାଠଖୁମ୍ପା ତାକୁ ଜଗି ରହିଥିଲା । ସେ ପୁଣି ଥରେ ବାଣୁଆ ଉପରକୁ ସୁଡୁସି ଆସିଲା, ଡେଣାରେ ତା ମୁହଁକୁ ପିଟି ଦେଇଗଲା, ଥଣ୍ଟରେ ଖୁମ୍ପି ପକାଇଲା ଓ ତା ଉପରେ ହଗି ଅସନା କରିଲଗିଲା ।

ଏଥର କିନ୍ତୁ ବାଣୁଆ ରାଗି ଚୂର୍ ହୋଇଗଲା । ସେ ଚଢ଼େଇଟାକୁ ମାରି ଘଉଡ଼େଇ ଦେଲା ଓ ତାକୁ ଧରି ତା ଚଣ୍ଡି ଚିପିବ ବୋଲି ବାହାରିଲା ।

କାଠଖୁମ୍ପା ଜାଣିଲା, ଏଣିକି ବାଣୁଆ ହାତରେ ଲାଗିଲେ ବିପଦ । ତେଣୁ ସେ ଉଡ଼ିଯାଇ ଗୋଟିଏ ଗଛ ଉପରେ ବସିଲା ଆଉ ବାଣୁଆ ଉପରେ ନଜର ରଖିଲା । ରାଗରେ ଜଳି ଜଳି ବାଣୁଆ ଠିକ୍‌କଲା, ବଦଅନୁକୂଳ ହେଉ ପଛେ, ସେ ଜଙ୍ଗଲର ଝୁବ ଗଡ଼ିଆକୁ ଯିବ ହିଁ ଯିବ । କାଠଖୁମ୍ପା ଯେମିତ ଦେଖିଚି ବାଣୁଆ ରାଗିକରି ଗୁଲବାର, ସେ ବୁଝିଲା ଆଉ ଡେରିକଲେ ଲାଭ ନାହିଁ । ସେ ଯେତେ ଶୀଘ୍ର ପାରେ ଉଡ଼ିଆସି ତା ସାଙ୍ଗମାନଙ୍କୁ ହୁସିଆର କରାଇଦେଲା ।

କହିଛି ସବୁଯାକ ଗୁଣ କାଟି ସାରିଥିଲା, ଖାଲି ଗୋଟିଏ ମଳବୃଢ଼ିଆ ଗୁଣ ବାକି । କହିଛର ବାନ୍ତକ ବସିଥିଲା ଯେମିତ ଏଇଲଗେ ହପୁଡ଼ି ଯିବ । ମୁହଁଯାଏ ...

ଯେତେବେଳେ କାଠଖୁମ୍ପା ଆସି ଖବର ଦେଲା ଯେ ବାଣୁଆ ଏ ଆଡ଼କୁ ଆସିବା ଉପରେ, କଇଁଛ ଆହୁରି ଜୋର୍‌ରେ କାଟିଲା, ଯଦିଓ ତା ପାଟି ସେତେବେଳକୁ ବଥେଇଲାଣି । ସେହରିଣ ଯେତେବେଳେ ଦେଖିଲା ବାଣୁଆ ଦଉଡ଼ି ଆସୁଛି ସେ ପାରୁପର୍ଯ୍ୟନ୍ତେ ଝଟ୍‌କାଟାଏ ଦେଲା । ଦଶ କଦମ ଦୂରରେ ବାଣୁଆ ଥିବ କି ନାହିଁ, ଗୁଣଟା ଛିଣ୍ଡିଗଲା, ଆଉ ହରିଣ ବଣକୁ ପଳାଇଗଲା । କାଠଖୁମ୍ପା ଗଛକୁ ଉଡ଼ିଗଲା; କିନ୍ତୁ ରାତିସାରା ଓ ସକାଳଯାକ କାମ କରି କରି ହାଲିଆ ହୋଇଥିଲା କଇଁଛ, ସେ ଅତି ଦୁର୍ବଳ । ଦୁର୍ବଳତାରୁ ସେ ମୂର୍ଚ୍ଛା ହୋଇ ଯୋଉଠି ଥିଲା ସେଇଠି ପଡ଼ିରହିଲା ।

ଭୟଙ୍କର ରାଗିଯାଇ ବାଣୁଆ କଇଁଛଟାକୁ ଉଠାଇ ଗୋଟିଏ ମୁଣିରେ ପୂରାଇ ମୁଣିଟାକୁ ଗୋଟିଏ ଗଛ ଡାଳରେ ବାନ୍ଧିଦେଲା । ପଳାଇ ଯାଉଁ ଯାଉଁ ବୁଲିପଡ଼ି ସେହରିଣ ଏତକ ଦେଖି, ଏତେ ଜୋରରେ ଅଟ୍‌କି ଠିଆ ହେଲା ସେ ଆଉ ଟିକକେ ପଡ଼ି ଯାଇଥାନ୍ତା ସେ । ଯୋଉ ସାଙ୍ଗ ତାକୁ ମୁକ୍ତ କରିବାକୁ ଏତେ ପରିଶ୍ରମ କରିଛି, ତାକୁ କଣ ସେ ଏ ଅବସ୍ଥାରେ ଛାଡ଼ି-ଦେଇ ଯାଇପାରେ !

ସେ ଚଟ୍‌କରି ଗୋଟାଏ ଫନ୍ଦି କଲା । ସେ ଝୁଣ୍ଡିବାର ଛଳନା କଲା, ବହୁକଷ୍ଟରେ ଉଠି ଛିଡ଼ାହେଲା, ଧକେଇ ଧକେଇ ଆଉ କେଇ ପାହୁଣ୍ଡ ବୁଲିକରି ପୁଣି ପଡ଼ିଗଲା ।



ବାଣୁଆ ସ୍ୱା ଦେଖି ବସ୍ତିଲେ, ହରିଣଟା ଏତେ ଥକି ଯାଇଥିଲା ଯେ ଆଉ ଜଲ୍‌ଦି ଦଉଡ଼ି ପାରିବନି । ତେଣୁ ସେ ନିଜର ଛୁଆଟି ଧରି ତାକୁ ଗୋଡ଼ାଇଲା ।

ସେହିଭଳି ଝୁଣ୍ଟିବାର ଅଭିନୟଟା ଠିକ ଜାରି ରଖିଲା; କିନ୍ତୁ ନିଜକୁ ବଞ୍ଚେଇ । ଏମିତି ଏମିତି ସେ ବାଣୁଆଙ୍କୁ ଜଙ୍ଗଲ ଭିତରକୁ ନେଇଗଲା । ଯେମିତି ସେ ଦେଖିଲା ଯେ ସେମାନେ





ବେଶ୍ କିଛି ଦୂରକୁ ପଳେଇ ଆସିଲେଣି, ବାଣୁଆଙ୍କ ପଟିମାନ ସେ ପବନବେଗରେ ଆଉ ଗୋଟାଏ ବାଟରେ ଫେରି ଆସିଲା। ସେ ମୂଣାଟାକୁ ଶିଙ୍ଘଦେଇ ଟେକିନେଲା, ତାକୁ ମାଟିରେ ପକେଇ ଫାଡ଼ିଦେଲା ଓ କଇଁଛକୁ ବାହାରକୁ ନେଇ ଆସିଲା। କୃତଜ୍ଞ ହୋଇ କଇଁଛ ଝୁବ୍ ଗଡ଼ିଆରେ ଯାଇ ମିଳେଇଗଲା।

ଏମିତ ଏମିତ ବର୍ଷ ପରେ ବର୍ଷ ବିତିଗଲା ଓ ଗେହ୍ଲା ଛୁଆଟି ଦଳର ମର୍ଦ୍ଦ ହୋଇଗଲା। ତାପରେ ଯେଉଁଦିନ ଦଳର ନେତା ବୁଢ଼ା ହରିଣ ମଲା ସବୁ ହରିଣ ମିଶି ଠିକ୍ କଲେ ଗେହ୍ଲା ହବ ଦଳର ମୁଖିଆ।

ସେମାନେ କଣ ଜାଣିବେ ଦଳଟା ଲାଗି କେତେ କେତେ ବିପଦ ରହିଛି !



ବନାରସର ରଜାଙ୍କ ରାଜ୍ୟରେ ଥିଲା ସେଇ ବଣଟା ଯୋଉଠି ହରିଣ ପଲକ ରହୁଥିଲେ । ବୁଢ଼ାହୋଇ ବନାରସର ରଜା ମରିଗଲେ । ତାଙ୍କ ପୁଅ ହେଲେ ନୂଆରଜା । ନୂଆରଜାଙ୍କର ପୁଣି ଶିକାରରେ ଭାରି ଝୁଙ୍କ । ଏଇ ଝୁଙ୍କ ଫଳରେ ଖାଲି ଯେ ଜୀବ-ଜନ୍ତୁଙ୍କର ଅସୁବିଧା ହେଲା ତା ନୁହେଁ, ପ୍ରଜାପାଟକଙ୍କୁ ବି ଭାରି ଅଡ଼ୁଆ ହେଲା । କାହିଁକନା, ରଜାଙ୍କ ହୁକୁମରେ ଗ୍ରାମବାସୀ, ନଗରବାସୀ, ସଭିଏଁ ସେ ଶିକାର ଦଳରେ ଯିବେ, ଶିକାର ଜାଗାଟିକୁ ଘେରି ଗଛ ବୁଦାଭିତରୁ ହରିଣଙ୍କୁ ଘଉଡ଼େଇ ଆଣିବେ । ତା ହେଲେ ଯାଇ ରଜା ଧନୁଶର ନେଇ ଶିକାର କରିବେ । ଏଣେ ରଜା ତ ଫି ଦିନ ଶିକାରକୁ ଯିବେ, ପ୍ରଜାଏ କାମ କରିବେ କଣ, ପେଟ ପୋଷିବେ କୁଆଡ଼ୁ ?

ପ୍ରଜାଙ୍କ ଭିତରୁ କିଛି ମୁରୁଖା ଲୋକ ମିଶି ଏ ସମସ୍ୟାର କଣ ସମାଧାନ ହବ ସ୍ଥା ବସ୍ତୁର ଆଲୋଚନା କରିବେବୋଲି ସଭାଟିଏ କଲେ । ରାଜାଙ୍କ ଉଆସର ଚାରିକଡ଼େ ବେଶ୍ ସମତଳ ଜମି ଥାଏ । ଜଣେ ବୁଢ଼ାଲୋକ ଗୋଟିଏ ଉପାୟ କହିଲା । "ଚାଲ-ଏଇ ସମତଳ ଜମିଟାକୁ ବାଡ଼ ଘେରିଦବା, ତା ପରେ ତହିଁରେ ଭଲ ଘାସ ଲଗେଇ ଦବା । ଏଠି ସେଠି ପୋଖରୀ ବି ଖୋଳିଦେବା ଯେ ବଡ଼ ବଡ଼ ହରିଣ ପଲସବୁ ଏଠି ରହିପାରିବେ, ଆଉ ଯେତେ ଇଚ୍ଛା ସେତେ ଘାସ ଆଉ ପାଣି ପାଇପାରିବେ । ସେଇଠୁ ଆମେ ସମସ୍ତେ ଯାଇ ଜଙ୍ଗଲରୁ ହରିଣଙ୍କୁ ଘେରି ଓ ଘଉଡ଼େଇ ଆଣି ଏଠି ପଶେଇଦେବା । ତାହାହେଲେ ହରିଣ ହାତପାହାନ୍ତାରେ ରହିବେ, ଆଉ ମହାରାଜା ଆମକୁ ନ ନେଇ ମନଇଚ୍ଛା ଶିକାର କରିପାରିବେ ।"

ସମସ୍ତେ ମାନିଲେ, ଏଇଟା ବେଶ୍ ଭଲ ଉପାୟ । ସେମାନେ ରଜାଙ୍କ ପାଖକୁ ଗଲେ । ରଜା ଖୁସିରେ ହଁ କଲେ । ସେମାନଙ୍କର ଦୁଃଖ ଅଳ୍ପ ଦିନରେ ଯିବ ଏତକ ଭାବି ବଡ଼ ଉତ୍ସାହରେ ଲୋକେ ପୋଖରୀ ଖୋଳା ଓ ଘାସରୁଆ ଆରମ୍ଭ କରିଦେଲେ । ଖୁବ୍ ଶୀଘ୍ର

ଜାଗାଟି ଦିବ୍ୟସୁନ୍ଦର ବଗିଚା ହୋଇଗଲା । ଯେଉଁଦିନ ସ୍ୱର୍ଣ୍ଣପଟେ ବାଡ଼ ପୋତା କାମ ସରିଗଲା, ପ୍ରାୟ ଶହେଜଣ ଲୋକ ଜଙ୍ଗଲକୁ ଚାଲିଗଲେ । ସେଠି ସେମାନେ ଘେରାଘେରି କରି ଓ ଗଛ ବୁଦା ବାଡ଼େଇ ହରିଣ ପଲଙ୍କୁ ପଦାକୁ କାଢ଼ିଲେ । ସେଇଠୁ ସେମାନେ ଢୋଲ ପିଟି, ପାଟିକରି ଏମିତି ଗଣ୍ଡଗୋଳ କଲେ ଯେ ସେ ଜୀବଯାକ ଡରିଗଲେ ଓ ଦଉଡ଼ାଖାଇ ବଗିଚାରେ ପଶିଗଲେ । ସବୁଯାକ ହରିଣଙ୍କୁ ବାଡ଼ଘେରା ହତାରେ ପୁରାଇଦେଇ ପ୍ରଜାମାନେ ଫାଟକ ବନ୍ଦ କରିଦେଲେ ଆଉ ରଜାଙ୍କୁ ଯାଇ କହିଲେ ଯେ ଏଣିକି ସେ ମନେକଲେ ଦିନସାରା ଶିକାର କରିପାରିବେ—ଆଉ କାହାରିକି କାମ କମେଇକରି ସହର ବାହାରକୁ ଡାକିବା ଦରକାର ନାହିଁ ।

ଦୁଇଟି କଳା-ହରିଣ-ପଲ ସେଠାରେ ହୋଇଥିଲେ । ଗୋଟିକର ନେତା ଥିଲା ରୋହିତା । ଅନ୍ୟ ଦଳଟିର ନେତା ଥିଲା ହରନ । ସେ ବି ଗୋଟିଏ ପାରିଲା ମର୍ଦ୍ଦ । କିନ୍ତୁ ରୋହିତା ଠାରୁ ତାର ଫରକ ଏତିକି ଯେ, ରୋହିତାର ଶାସନ ସ୍ନେହ ଦେଇ, ହରନ୍ ଶାସନ ଶୃଙ୍ଖଳା ଦେଇ । ରାଜା ଯେଉଁଦିନ ହରିଣପଲଙ୍କୁ ପରିଦର୍ଶନ କଲେ, ସେଦିନ ସେ ଏଇ ଦୁଇ ନେତାଙ୍କୁ





ଦେଖିଲେ । ଏତେ ସୁନ୍ଦର ହରିଣ ସେ ଜୀବନରେ ଦେଖି ନ ଥିଲେ । ତେଣୁ ସେ ହୁକୁମ ଦେଲେ ଯେ ଏମାନଙ୍କୁ କେହି ଯେମିତି ନ ମାରେ ।

ଟୋକା ରାଜା ପ୍ରାୟ ସବୁଦିନ ଶିକାରକୁ ବାହାର ହେଉଥିଲେ । ଧନୁର୍ବିଦ୍ୟାରେ ତାଙ୍କର ପାରଦର୍ଶିତା ନେଇ ତାଙ୍କର ବେଶ୍ ଅହଙ୍କାର ଥିଲା । ସେ ଆଗ ଜନ୍ତୁଙ୍କୁ ତାଙ୍କ ବାଟରେ ଯେତେ ଶୀଘ୍ର ପାରନ୍ତି ପଳାଇବାକୁ ଦେଉଥିଲେ । ଜନ୍ତୁଟି ଯେତେବେଳେ ଗୋଟାଏ ନିରାପଦ ଦୂରତ୍ୱରେ ଥିବ ତେବେଯାଇଁ ସେ ଲକ୍ଷ କରୁଥିଲେ । ପୁଣି ଗୋଟିଏ ହରିଣ ମାରିଲେ ସେ ସେଦିନ ପାଇଁ ଶିକାର ବନ୍ଦ କରୁଥିଲେ ।

କିନ୍ତୁ ଏଇ ଭୟାନକ ଧନୁର୍ଦ୍ଧର ପରିସରକୁ ଆସିଲା ମାତ୍ରେ ଜୀବଜନ୍ତୁ ଡରିଯାଇ ଯାତେ ସାତେ ଦଉଡ଼ୁଥିଲେ । ଫଳରେ ଗୋଟାଏ ହରିଣ ମାରି ରଜା ସେ ଦିନକ ଲାଗି ଶିକାର ବନ୍ଦ କଲା ବେଳକୁ ଅନେକ ହରିଣ ଗୁରୁତର ଭାବରେ ଆହତ ହେଉଥିଲେ ।

ଏମିତି ଅଯଥାରେ କଷ୍ଟ ବଢ଼ିଲାରୁ ରୋହନ୍ତା ହରିଣଙ୍କୁ କହିଲା, "ସାଙ୍ଗ, ଆମର ତ ଜାଣି ... ଟ୍ରେପ । କାହିଁକନା, ଆମ ଦଳମାନଙ୍କରୁ ଗୋଟିକର ମୃତ୍ୟୁ ପ୍ରତିଦିନ ଥିଆ; କିନ୍ତୁ ପ୍ରାଣୀ ମାତ୍ରେ ମରିବ—ଆଜି ନ ହେଲେ କାଲି । ତଥାପି ଆମେ ଯେତେବେଳେ ଜଙ୍ଗଲରେ ଥିଲେ ସେତେବେଳେ ବି ବାଘଆ, ଆଦିବାସୀ, ବୃଷୀ କି ହିଂସ୍ରଜନ୍ତୁ ନଥିଲେ କି ! କିନ୍ତୁ ଏଠି ସବୁଠୁଁ ବଡ଼ ଦୁଃଖର କଥା ହେଲା ଯେ ଜଣେ ମଲାବେଳକୁ ଆଉ କେତେ କେତେ ଆହତ ହୋଇ କେତେ କଷ୍ଟ ଭୋଗୁଛନ୍ତି ।"



ହରନ୍ କହିଲା, "ସତ କଥା, ବଡ଼ ଦୁଃଖର କଥା; କିନ୍ତୁ ଆମର ଆଉ ଉପାୟ କ'ଣ ?"

"ଉପାୟ ଅଛି । ଗୋଟିଏ ଉପାୟ ମତେ ଦିଶୁଛି ।" ସ୍ୱେହନ୍ଦ୍ରା କହିଲା, "ଚାଲ ସବୁଦିନେ ଆମେ ଧର୍ମଗୁଳା ଉଠେଇବା । ଯାହା ନାଁ ସେଥିରେ ଉଠିବ ସେ ରଜାଙ୍କ ଶିକାର

ପାଇଁ ନିଜକୁ ଉତ୍ସର୍ଗ କରିବ । ଏଇ ଧର୍ମଗୁଳା ହବେ ମୋ ଦଳ ପାଇଁ, ହବେ ତମ ଦଳ ପାଇଁ ଉଠିବ । ଏମିତି କଲେ ଅନ୍ୟ ହରିଣତକ ଅନ୍ତତଃ ଆହତ ହେବେନି ।" ହରିନ୍ ସାଙ୍ଗେ ସାଙ୍ଗେ ରାଜିହେଲା ।

ଯଦିଓ ରାଜାଙ୍କର ଶିକାରରେ ଖୁବ ସଉକ୍, ସେ ମାତ୍ର ଗୋଟିଏ ହରିଣ ଟି ଦିନ ଖୁଣ୍ଟୁଥିଲେ, ଆଉ ଅଯଥା ଗୁଡ଼ାଏ ହରିଣ ଘାଇଲା ହେବାରେ ସେ ବି ଦୁଃଖିତ ଥିଲେ । ଫଳରେ ସେ ବି ପ୍ରସ୍ତାବଟିରେ ରାଜି ହେଲେ । କିନ୍ତୁ ସବୁ ଦିନ ଗୋଟିଏ ଗୋଟିଏ ହରିଣ ତାଙ୍କ ପାଖକୁ ଆସିବ ମରିବାପାଇଁ, ଯା ତାଙ୍କର ପସନ୍ଦ ନଥିଲା । ସେ କଣ କଂସେଇ ହେଇଚନ୍ତି ?

ସେ କଣ କଲେ ନା, ପୁରୁଣା ବାଡ଼ ବାହାରେ ଆଉ ଗୋଟିଏ ବାଡ଼ କରିଦେଲେ । ଏମିତି କଲାରୁ ବଗିଚା ଚାରିପାଖେ ଗୋଟିଏ ରାସ୍ତା ଦଉଡ଼ିବା ପାଇଁ ହୋଇଗଲା, ଯେମିତିକି ଘୋଡ଼ା-ଦୌଡ଼ରେ ଥାଏ । ସେଇ ରାସ୍ତାର ଗୋଟିଏ ଜାଗାରେ ସେ ଚିହ୍ନ ଦେଇଦେଲେ ଯେ ସେଇଠୁ ଦଉଡ଼ା ଆରମ୍ଭ ହବ । ପୁଣି ଭିତରପଟ ବାଡ଼ରେ ଗୋଟିଏ ଫାଟକ କରିଦେଲେ । ଆରମ୍ଭ ଚିହ୍ନ ପାଖରେ ଘୋଡ଼ାରେ ବସି ରାଜା ଅପେକ୍ଷା କରୁଥିବେ । ଯାହାର ଧର୍ମଗୁଳା ପଡ଼ିଥିବ ସେ ହରିଣଟି ଭିତର ଫାଟକ ଦେଇ ରାସ୍ତାକୁ ଆସିବ । ସେ ବେଶ୍ କିଛି ଦୂର ଗଲା ପରେ ରାଜା ଗୋଡ଼େଇ ଗୋଡ଼େଇ ଧନୁଶର ନେଇ ତାକୁ ମାରିବେ ।

ରଜା ଯା ବି ମାନିଲେ ଯେ ଯେବେ ଶର ନ ଲାଗି ହରିଣଟି ପୁରା ଗୋଟିଏ ଘେର ଦଉଡ଼ିଯାଏ ରାସ୍ତାଯାକ, ଆଉ ଆରମ୍ଭ ଚିହ୍ନ ପାଖେ ପଳେଇଆସେ ତାହେଲେ ତାକୁ



ସେଦିନ ପାଇଁ ଗୁଡ଼ାଏ ଆହତ ଏବଂ ଆଘାତରେ ତା ନାଁ ଉଠିବା ଯାକେ ତାର ଆଉ ଆସିବା ଦରକାର ନାହିଁ; କିନ୍ତୁ ରାଜାଙ୍କ ନିଶାଣ ଏତେ ଭଲ ଯେ କେବେହେଲେ କୌଣସି ହରିଣ ରକ୍ଷା ପାଉନାହିଁ । ଯେଉଁ ଜନ୍ତୁ ଉପରେ ଧର୍ମଗୁଳା ପଡ଼େ ସେ ଜାଣେ ଯେ ତାର ସେଇଟା ଶେଷ ଦିନ । ଏହା ବଡ଼ ଦୁଃଖର କଥା । ତଥାପି ଆଗ ଅପେକ୍ଷା ଏହା ତେର ଭଲ, କାହିଁକିନା ଆଗେ ରଜା ଆସିଲେଇ ଦଳଟାଯାକରେ କୋକୁଆ ଭୟ ଖେଳି ଯାଉଥିଲା । ଆଉ ଗୋଟିଏ ହରିଣ ମଲା ବେଳକୁ ଅଧିକଜଣେ ହରିଣ ଆହତ ହେଉଥିଲେ ଗୁରୁତର ଭାବରେ ।

ଦିନକର ଗୋଟିଏ ଗର୍ଭିଣୀ ହରିଣୀର ପାଳି ପଡ଼ିଲା । ହରିଣୀ ଭାବିଲା, "ଆଜି ମୁଁ ଯେବେ ମରିଯିବି, ମୋ ଛୁଆଟି ତ ଆଉ ଜନ୍ମ ହବ ନାହିଁ; ସେ ବି ମୋ ସାଙ୍ଗରେ ମରିଯିବ । ଛୁଆ ଜନ୍ମ ହେବାଯାକେ ସମୟ ମିଳନ୍ତା କି, ମୋର ଆଉ ମରିବାରେ ଆପତ୍ତି ନଥାନ୍ତା । ଏଇ ହରିଣୀଟି ହ୍ୱରନ ଦଳର । ତେଣୁ ସେ ତା ଆଗରେ ଗୁହାରି କଲା ଯେ ତା ପାଳିଟା ଆଉ କିଛି ଦିନ ପଛେଇ ଦିଆହେଉ । ହ୍ୱରନ ସବୁ ବୁଝିଲା; କିନ୍ତୁ ସେ କହିଲା, "ଅବଶ୍ୟ ଏହା ବଡ଼ ଦୁର୍ଭାଗ୍ୟର କଥା । କିନ୍ତୁ ତୋ ପାଳି ମୁଁ ଆଉ କାହାକୁ ଦେଇ ନ ପାରେ । ସମସ୍ତଙ୍କୁ ନିଜ ପ୍ରାଣଟି ପ୍ରିୟ, ସମସ୍ତେ ଯେତେ ଦିନ ସମ୍ଭବ ବଞ୍ଚିବାକୁ ଚାହାନ୍ତି । ମୁଁ ଆଉ କୌଣସି ହରିଣକୁ ତୋ ଜାଗାରେ ଯାଇ ମରିବାକୁ କହିଲେ ସେଇଟା ଅନ୍ୟାୟ ହେବ ।"

ନେତା କଥାର ନ୍ୟାୟବିଚାର ହରିଣୀଟି ବୁଝିଲା । ସେ ଜାଣିଲା ତାର ଆଉ ବଞ୍ଚିବାର ଆଶା ନାହିଁ । ତଥାପି ସେ ଶେଷ ଚେଷ୍ଟା କରି ଦେଖିବାକୁ ଚାହିଁଲା । ସେ ଯାଇ ଅନ୍ୟ ଦଳର ନେତା ସୋହନ୍ତା ସଙ୍ଗେ ଦେଖା କରି ତାକୁ ଉପାୟ ପଚାରିଲା । ରୋହନ୍ତା ସବୁ କଥା



ଧୈର୍ଯ୍ୟ ଧରି ଶୁଣିଲା । ସେ ବି କହିଲା ଯେ ହରନ୍ ଠିକ୍ କହୁଛି; ପ୍ରକୃତରେ ଆଉ କୋଉ ହରିଣକୁ ପଠାଇବା ଅନ୍ୟାୟ ହେବ ।

ସେ ତଥାପି କହିଲା, "ଛୁଆ ଜନ୍ମହେବାଯାକେ ତମର ଯିବା ଦରକାର ନାହିଁ ।"
ହରିଣୀ ପଚାରିଲା, "କିନ୍ତୁ ଆଜି କଥା କଣ ହବ ?"

"ମୁଁ ଯେମିତି ହେଲେ ଚଳେଇ ନେବି । ତମେ ଚିନ୍ତା କରିବନି ।"

ସେଦିନ ଯେତେବେଳେ ରଜା ଶିକାରକୁ ଆସି ପହଞ୍ଚିଲେ ସେ ଦେଖି ଆଶ୍ଚର୍ଯ୍ୟ ହେଲେ ଯେ ରୋହନ୍ତା ଆସି ଶିକାର ରାସ୍ତାରେ ହାଜର ହୋଇଛି ।



"ପ୍ରିୟ ବନ୍ଧୁ", ରଜା କହିଲେ, "ତମେ ଜାଣିଚ ଯେ ତମକୁ ବା ଅନ୍ୟ ଦଳର ନେତା ହରିନ୍‌ଙ୍କୁ କେହି କିଛି କରିବେନି ବୋଲି ମୁଁ ହୁକୁମ୍ ଦେଇଚି । ଧର୍ମଗୁଳା ଛୁଟେଇବା ବେଳେ ତମେ ନିଜ ନାଁ ଦବା ଉଚିତ ହେଇନି । ମୁଁ ମୋ ନିଜ ହୁକୁମ ତ ଆଉ ଅମାନ୍ୟ କରି ନ ପାରେ ! ତମେ ଫେରିଯାଅ, ଆଉ କୋଉ ହରିଣକୁ ପଠାଅ ।"

ଗୋହଲ୍ୟା ସେଇ ହରିଣୀଟି କଥା କହିଲା । ତା ପରେ କହିଲା, "ମୁଁ କି ହରିନ୍ ଯେବେ ଆଉ କୋଉ ହରିଣକୁ ଆସିବାକୁ ହୁକୁମ ଦେଇଥାନ୍ତୁ ତା ହେଲେ ବଡ଼ ଅନ୍ୟାୟ ହେଇଥାନ୍ତା ! ମୁଁ ତା ନକରି ନିଜେ ଆସିବାକୁ ଠିକ୍ କଲି ।"

ରଜା ଏଥିରେ ଏତେ ମୁଗ୍ଧ ହୋଇଗଲେ ଯେ ଅନେକ ସମୟଯାକେ ସେ ଚୁପ୍ ରହିଲେ । ତା ପରେ ସେ କହିଲେ, "ଆଜି ଶିକାର ବନ୍ଦ । ମୁଁ ପୁଣି ଥରେ ତମ ସାଙ୍ଗରେ କଥା ହେବାକୁ ଚାହେଁ । ସନ୍ଧ୍ୟାବେଳେ ମୋ ସାଙ୍ଗରେ ଦେଖା କର ।"



ଗ୍ରେହଣ୍ଡା ଯେତେବେଳେ ସନ୍ଧ୍ୟାବେଳେ ଯାଇ ଦେଖା କଲା, ରଜା କହିଲେ, "ମୁଁ ଠିକ୍ କରିଛି ତମ ଦୁହିଁଙ୍କ ମୁଣ୍ଡ ରହିବ । ତମର ବି କିଛି ହାନି ହେବନି, ସେ ହରିଣୀଟିର ବି କିଛି ହାନି ହେବନି ।"

"ଏମିତି କାହିଁକି ଠିକ୍ କଲେ ?" —ଗ୍ରେହଣ୍ଡା ପଚାରିଲା ।

"କାହିଁକି ନା, ଗୋଟିଏ ନିର୍ଦ୍ଦୋଷ ହରିଣୀ, ଆଉ ତମ ପରି ଜଣେ ମହାନ୍ ହୃଦୟ ହରିଣକୁ ମାରିବା ମୋର ଅନ୍ୟାୟ ହେବ ।"

"ମହିମା !" ଗ୍ରେହଣ୍ଡା କହିଲା, "ଏଇ ସୁବିଧାର ପାଇଁ କଣ ଦଳର ପ୍ରତ୍ୟେକ ପ୍ରାଣୀ ଖଜନ ଲୁହନ୍ତି ?"

ରଜା ଅନେକ ସମୟ ଭାବି ଭାବି ଗୋଟିଏ ବଡ଼ରକମର ସିଦ୍ଧାନ୍ତ ନେଲେ—"ଆଜିଠାରୁ ମୁଁ ହରିଣ ଶିକାର ବନ୍ଦ କଲି । ଏଇ ବଗିଚାଟି ହେବ ଗୋଟିଏ ଅଭୟାରଣ୍ୟ । ବଣରେ ହେଉ ବା ସମତଳରେ ହେଉ; ହରିଣ ମାରିବା ବନ୍ଦ ହେଲା । ଖାଲି ଫସଲ ନଷ୍ଟ କଲେ ଚାଷୀ ମାରିପାରେ ।"

ଏହିପରି ଭାବରେ ଅଭୟାରଣ୍ୟମାନ ଭାରତ ସାରା ଆଗ କାଳରେ ସ୍ଥାପିତ ହୋଇଥିଲା । କିନ୍ତୁ ସମୟକ୍ରମେ ଆମର ସେହି ମହାନ୍ ଆଦର୍ଶ 'ଜୀବେ ଦୟା' କୁ ଆମେ ଭୁଲିଗଲୁ । ଆଉ କଳାହରିଣ ପରି ଏତେ ନିଷ୍ଠୁର ଭାବରେ ଆଉ କୌଣସି ଜୀବ ଶତ ଶତ ସଂଖ୍ୟାରେ ଗୁଳି ଖାଇ ନାହିଁ । କିନ୍ତୁ ଆଜିକାଲି ଆମର ଏହି ନିଷ୍ଠୁରତାର ପରିଣାମ ଆମେ ବୁଝି ପାରିଛୁ ଏବଂ କଳା ହରିଣ ସାରା ଭାରତରେ ଅଭୟ ପାଇଅଛି; ଏହାକୁ ମାରିବା ସମ୍ପୂର୍ଣ୍ଣ ମନାହୋଇଅଛି ।



ମାଙ୍କଡ଼ ରାଜା

# ନାଦ୍ରିୟୁ

# ମାଙ୍କଡ଼ରାଜା ନାଦ୍ରିସ୍ତୁ

ଥରେ ମଧ୍ୟ-ପ୍ରଦେଶର ଜଙ୍ଗଲି ଇଲାକାରେ ଗୋଟିଏ ମାଙ୍କଡ଼ ପିଲା ଜନ୍ମ ହେଲା । ବାପା ମାଆ ତା ନାଁ ଦେଲେ ନାଦ୍ରସ୍ୱ ।

ବଡ଼ ହେଲାରୁ ସେ ବେଶ୍ ସ୍ୱାସ୍ଥ୍ୟବନ୍ତ ଯୁବାଟିଏ ହେଲା; କିନ୍ତୁ ସେ ବଡ଼ ଦୁଃସାହସିକ ଥିଲା ଏବଂ ଏକା ଏକା ସାରା ଜଙ୍ଗଲ ବୁଲି ଦେଖିବାକୁ ଚାହୁଁଥିଲା । ତା ବାପ ମାଆ ତାକୁ ବୁଝାଇଲେ ଯେ ଏବେ ସେ ବଡ଼ ହେଲାଣି, ବୁଦ୍ଧି ଶୁଦ୍ଧି ହେଲାଣି, ସଦାବେଳେ ଦଳସାଙ୍ଗରେ ତାର ରହିବା ଦରକାର । ଏକୁଟିଆଟା ବୁଲିବା ଠିକ୍ ନୁହେଁ, କାହିଁକନା କେତେବେଳେ ବିପଦ ଆପଦ ଆସିପାରେ । ଦିନାକେତେ ସେ ତାଙ୍କ କଥା ମାନେ, ପୁଣି ଦୁଃସାହସର ନିଶାରେ ଦଳ ଛାଡ଼ି ପଳେଇଯାଏ । ଅବଶ୍ୟ ସବୁଦିନ ସେ ସଞ୍ଜବୁଡ଼କୁ ଫେରିଆସେ ।

ଏମିତି ଦିନେ ଗଛରୁ ଗଛ ଡାଳରୁ ଡାଳ ଡେଇଁ ଡେଇଁ ନାଦ୍ରସ୍ୱ ଜଙ୍ଗଲ ମଝିଠାରୁ ଓ ତା ଦଳ ଠାରୁ ବହୁତ ଦୂରକୁ ଚାଲିଗଲା । ସେଠି ସେ ଦେଖିଲା ଯେ ସେଇ ଜଙ୍ଗଲର



ବଣପଟ ଘେର ଗୋଟିଏ ନଈ ବୋହିଯାଇଛି । ସେଇ ନଈ ମଝିରେ ଗୋଟିଏ ପଠା ଅଛି । ନାଦ୍ୟୁ ଦେଖି ଖୁବ୍ ଖୁସୀ ହେଲା ଯେ ସେଇ ପଠାରେ ପାଚିଲା-ଆମ୍ବ-ଭରା ଆମ୍ବଗଛ ମାନ ରହିଛି ।

ସେ ନଈ ପଠାକୁ ଯିବାକୁ ଚାହିଁଲା, କିନ୍ତୁ ଏତେ ଓସାରିଆ ନଈଟାକୁ ଡେଇଁବ କିମିତି ? ନଈଟା ଏତେ ଓସାର ଯେ ଶୁଖିଲା ଥିବା ବେଳେ ବି ନାଦ୍ୟୁଭଳି ଯୁଆନକୁ ତ



ଶେଷ ଲାଗିଥାନ୍ତା । ଏବେ ବର୍ଷା ହୋଇ ଯାଇଛି, ତହିଁର ସ୍ରୋତ ତୋଡ଼ ସେ କାହିଁରେ କଣ ! ଚକାଚକ ପାଣି ସବୁ ଦିଶୁଛି ।

ପ୍ରାୟ ନିରାଶ ହୋଇ ସେ ଜଙ୍ଗଲ ଭିତରକୁ ଫେରି ଆସିବ ବୋଲି ଭାବୁଛି, ଏତିକି ବେଳକୁ ତା ଆଖି ପଡ଼ିଗଲା କଣ୍ଟାଏ କଳା ହୋଇ ଦିଶୁଥିବା ନଈ ମଝିରେ କଣ ! ସେ ନିଠେଇକରି ଚାହିଁଲା, ଆଉ ଜାଣିପାରିଲା ଯେ ସେଇଟା ଗୋଟାଏ ବଡ଼ ପଥରର ଉପର ଭାଗ । ପାଣି ତା ଚାରିପଟେ ଭଉଁରି ଖାଇ ଧଳା ଧଳା ଫେଣ ଉଠୁଛି । ପଥରଟାର ଖୁବ୍ ବେଶୀ ଅଂଶ ସେ ପାଣି ଉପରକୁ ଦିଶୁଛି ତା ନୁହେଁ; କିନ୍ତୁ ନାଦ୍‌ସ୍ୱୁକୁ ଲାଗିଲା ସେଠିକି ଗୋଟେ କୁଦାମାରି ତା ଉପରୁ ପଠାକୁ କୁଦାଏ ମାରିବାକୁ ତାହା ଯଥେଷ୍ଟ ହେବ । ଏଇଟା ବିପଜ୍ଜନକ ଦିଶିଲା;



କିନ୍ତୁ ନାଢ଼ୁସ୍ତ ବେଶ୍ ସାହସୀ ଯୁଆନ୍, ସହଜେ ଦବିବା ଜୀବ ନୁହେଁ। ଶେଷକୁ ସେ କୌଣସି ପ୍ରକାରେ ଯାଇ ପଠାରେ ପହଞ୍ଚିଗଲା ।

ଯେମିତି ମିଠା ଆମ୍ବ ବାସ୍ନା ଆମ୍ବ ସେ ତା ଜୀବନରେ ଖାଇନି । ଆଉ ସେମିତି ଆମ୍ବ ସେଠି ବୋଝ ବୋଝ ଝୁଲୁଚି । ମାଙ୍କଡ଼ ପୁଅ ପେଟେ ଠୁଙ୍କିଦେଲା ! ସେ ଏତେ ଖାଇଲା ଯେ ଯେତେବେଳେ ଘରକୁ ଫେରିବାକୁ ସେ ମନକଲା, ଦେଖିଲା ସେ ପାରିବନି, ପେଟ ଭର୍ତ୍ତି ହୋଇଯାଇଚି, ଆଉ ଦେହର ଓଜନ ଦୁଗୁଣ ହେଲାପରି ଲାଗୁଚି । ପୁଣିଥରେ କୁଦାମାରି ଫେରିବାଲାଗି ତାକୁ ଆହୁରି ଘଣ୍ଟାଟିଏ ଅପେକ୍ଷା କରିବାକୁ ପଡ଼ିଥିଲା । ଏତେ କଥା କରି ମଧ୍ୟ ସେ ଏକା କୁଦାକେ ଯାଇ ପଥର ଉପରେ ପଡ଼ିପାରିଲାନି, ଟିକିଏ ପଛକୁ କରି ପଡ଼ିଲା ଓ



କୌଣସିମତେ ପଥରର କଣଟିଏ ଧରି ହାତ ଗୋଡ଼ ବାଡ଼େଇ ରକ୍ଷା ପାଇଗଲା—ନହେଲେ ସୁଅ ତୋଡ଼ରେ ଭାସି ଯାଇଥାନ୍ତା ! ସେ ପଥର ଉପରକୁ ଚଢ଼ିଯାଇ ଟିକଏ ଦମ୍ ମାରିବାକୁ ବସିପଡ଼ିଲା । ପାଣି କାଳୁଆ ଅଣ୍ଡା ଥିଲା ଆଉ ସେ ଓଦା ଜୁବୁବୁଡ଼ୁ ହୋଇ ଥରିବାକୁ ଲାଗିଲା । "ଓଃ ହୋ ! ମୁଁ ଆଉ କେବେ ଏତେ ଲୋଭ କରିବିନି"—ସେ ମନେ ମନେ କହିଲା । "ବାପ୍, ଖେଳ ମାରିବାଯାକେ ଖାଇବ ଯାହା ।" ଟିକଏ ଦମ୍ ମାରି ନିଜ ବଳ ପାଇଲା ଓ ଖରାରେ ଦେହଟି ଶୁଖାଇଲା । ତା ପରେ ନାଦ୍ରସ୍ଥ କୂଳକୁ କୁଦା ମାରି ଜଙ୍ଗଲ ଭିତରକୁ ଫେରିଆସିଲା ।

କେତେ ଉତ୍ସାହରେ ସେ ତା ବାପ ମାଆ ଆଉ ଜଙ୍ଗଲର ଅନ୍ୟ ମାଙ୍କଡ଼ଙ୍କୁ କହିଲା,



ସେ କେମିତି ପଠାଟାଏ ଦେଖିଛି ଯେଉଁଠି ସଂସାରର ସବୁଠୁ ମିଠା ଆମ୍ବ ଲଦି ହେଉଛି । କିନ୍ତୁ ଝୋକାଟାକଲଆଏ ଏମିତି ବଢ଼େଇ ବଢ଼େଇ କେତେ କଥା କହନ୍ତି, ତାଙ୍କ ନିଜର କଳ୍ପନାରେ ସେମାନେ ମସଗୁଲ୍ ଥାଆନ୍ତି, ତାଙ୍କ କଥା ମୂରୁଖା ଲୋକେ ପାସଙ୍ଗରେ ପକାନ୍ତିନି । ମାଙ୍କଡ଼ମାନେ ମନେକଲେ ନାଦ୍ରୁସ୍ ଭୁଛା ବାଲ୍‌ଗି କରୁଛି, ନହେଲେ ତାଙ୍କ ସାଙ୍ଗେ ଥଟ୍ଟା କରୁଛି । ଝୋକାଟା ଯେତେବେଳେ ସମସ୍ତଙ୍କୁ ସେ ପଠାକୁ ଯିବାକୁ ଡାକିଲା ସେମାନେ କହିଲେ, "ଥାଉ ଥାଉ, ଆମ ଯିବା ଏବେ ନୋହିଲା, ତୁଇ ସେ ଅଢ଼ଳ ଡଢ଼ଳ ଆମ୍ବଗୁଡ଼ାକ ସବୁ ଖା ।"

ତା ପରେ ହନା କେତେ ନାଦ୍ରୁସ୍ ଠିକ୍ ସେଇଆ କଲା ।





ସେ ବର୍ଷାଦିନର ଆରମ୍ଭରେ ପଠାଟା ଦେଖିଥିଲା । ଦିନ ଯେତିକି ଆଗେଇଲା, ବର୍ଷା ବଢ଼ିଲା ଓ ଘନ ଘନ ପାଣି ବର୍ଷିଲା । ନାଦୁସ୍ୱ ଦେଖିଲା ନଈ ବଢ଼ୁଛି ଓ ପାଣି ଉପରକୁ ଉଠୁଛି । ତା ସହିତ ପଥରର ଯେତିକି ଅଂଶ ଉପରକୁ ଦିଶୁଥିଲା, ତାହା ଛୋଟରୁ ଛୋଟ ହୋଇ ଆସିଲା । ସେଥିରୁ ନାଦୁସ୍ୱ ଜାଣିଲା ଯେ ତାକୁ ପଥର ଉପରେ ଜଗା ରଖିବାକୁ ହେବ । ଯେଉଁଦିନ ସେଇଟା ପୂରାପୂରି ବୁଡ଼ିଯିବ, ସେ ସେଇ ପଠାରେ ଅଟକି ରହିଯିବ— ଆଉ ବଢ଼ି ଶୁଖିବାକୁ କେତେ ହପ୍ତା ଲାଗିବ କେଜାଣି !

ନଈର ଉପର ଆଡ଼ ବାଙ୍କ ପାଖରେ ଗୋଟାଏ ମସ୍ତବଡ଼ କୁମ୍ଭୀର ରହୁଥାଏ । ସେ ଶୋଇ ଶୋଇ ନାଦୁସ୍ୱର କାଣ୍ଡ କାରଖାନା ସବୁ ଦେଖିଛି, କେମିତି ଦିପହରିଆ ସେ

ସବୁଦିନ ଆସେ ଆଉ ବେଳବୁଡ଼କୁ କୁଦାମାରି ପୁଣି ଘରକୁ ଫେରିଯାଏ । ଲୋଭୀ କୁମ୍ଭୀରଟାର ମାଙ୍କଡ଼ ମାଉଁସରେ ଭାରି ସଉକ । ତେଣୁ କରି ସେ ଠିକ୍ କଲା କେମିତି କୋଉ ଛନ୍ଦରେ ହେଲେ ସେ ନାଦୁସୁକୁ ଦିନେ ଖାଇବ । ନାଦୁସୁ ସେ କୁମ୍ଭୀରକୁ ଦେଖିନଥାଏ । କାଳେ ଦେଖିଲେ ଡରିଯାଇ ମାଙ୍କଡ଼ ପିଲାଟା ଆଉ ଆସିବନି, ସ୍ୱା ଭାବି କୁମ୍ଭୀର ବି ତାକୁ ଲୁଚିଥାଏ ।

ନଈ ବଢ଼ିବାକୁ ଲାଗିଲା । ଆଉ ଦିନେ ନାଦୁସୁ ଆସି ସେ କୂଳରେ ପହଞ୍ଚି ଦେଖିଲା ଭଉଁରି ଅଉ ଫେଣ ଭିତରୁ ବଡ଼ଟେ ନାକରୁ ସେ ପଥରରୁ ଦେଖାଯାଉଛି । ସେ ବିଚାର କଲା ଡେଇଁବ କି ନାହିଁ; କିନ୍ତୁ ସେତେବେଳକୁ ଡେଇଁବାଟା ତାର ଦୋରସ୍ତ ହୋଇଗଲାଣି ।



ଆଉ ସେ ଜାଣିଥିଲା ଯେ ଯେତେ ଟିକିଏ ଜାଗା ହେଉ, ସେ ଠିକ୍ ଡେଇଁ ସେଠି ପହଞ୍ଚି ପାରିବ, ସେଠୁ ଆଉ କୁଦାଏ ମାରି ଆରପଟକୁ ଯାଇପାରିବ । ଅବଶ୍ୟ ସେ ଜାଣିଥିଲା ଯେ ଆଜି ଦିନକ ଶେଷ ଦିନ । ବର୍ଷାଦିନ ଆଉ ବଢ଼ିପାଣି ଥିବାଯାକେ ସେ ଆଉ ପଠାକୁ ଆସି ପାରିବନି ।

ଆଉ କେତେ ଦିନ, ହୁଏତ କେତେ ହପ୍ତା ପାଇଁ, ସେ ସ୍ୱାଡ଼େ ଆସି ପାରିବ ନାହିଁ । ସ୍ୱା ସ୍ୱବ ସବୁ ଦିନ ଯେତେ ସମୟ ପଠାରେ ରହେ ତା ଠାରୁ ଟିକିଏ ବେଶି ବେଳ ସେଦିନ ସେଠି କଟେଇ ଦେଲା । ତାପରେ ତାର ଚେତା ପଶିଲା । ଆରେ, ବେଳ ତ ଅନେକ ହେଲାଣି ଆସି ! ସେ ତର ତର ହୋଇ ଯୋଉ ଜାଗାରୁ ସବୁଦିନ କୁଦା ମାରେ, ସେଠିକି ପଳେଇଆସିଲା । ସୂର୍ଯ୍ୟ ଗଛ ପଛ ସେ ପାଖରେ ବୁଡ଼ି ଗଲେଣି । ସବୁଦିନ ସେ ବେଳ ଆଉ ଆଉଁ ଯାଏ ଯେ, ଖସ୍ ପଡ଼ି ପାଣି ଚକ୍ ଚକ୍ କରୁଥାଏ ।

ଠିକ୍ କୁଦା ମାରିବାକୁ ଯାଉଛି, ସେ ଟିକିଏ ଅଟକି ଗଲା । ପଥରଟା ତାକୁ କେମିତି ଅଡୁଆ ଅଡୁଆ ଦିଶିଲା । ଆଗରୁ ତ ବକଟେ ଦାଁକରୁ ଦିଶୁଥିଲା, ଏଇଲା ଯେମିତି ବର୍ଷା ହେବା ଆଗରୁ ଯେତେ ବଡ଼ ଥିଲା ସେତିକି ବଡ଼ ଦିଶୁଛି ।



ନାଦୁସୁ ପ୍ରମାଦ ଗଣିଲା । ଦୂରରୁ, ଟିକଏ ମାତ୍ର ଅନ୍ଧାରରେ ଅବଶ୍ୟ ଜନପଟା ପଥର ଭଳିଆ ଦିଶୁଛି; କିନ୍ତୁ ଏତେ ଜଲ୍‌ଦି ବଡ଼ ପାଣି କମିବ କେମିତି ? ସେ ଯୋଉଠୁ କୁଦା ମାରେ ସେଇପଟ କୂଳକୁ ଚାହିଁଦେଲା । ନାହିଁ, ପାଣି ଖସିବା ପରି ତ ଦିଶୁନାହିଁ ! ନାଦୁସୁ ନିଶ୍ଚୟ କରି ଜାଣିଲା, ନଈର କୌଣସି ରାକ୍ଷସ ତାକୁ ଫାନ୍ଦରେ ପକେଇବାକୁ ବସିଛି । ସେ ଗୋଟିଏ ଫନ୍ଦି ପାଞ୍ଚିଲା ।



ପଥରକୁ ଉଦ୍ଦେଶ୍ୟ କରି କହିଲା ପରି ସେ ପାଟି କଲା, "ହେଇ ! ହୋ ଭାଇ ! ମୁଁ ଅଇଲିଣି ।" ସେ କଥାର ଜବାବ୍ ଆସିଲାନି । ତା ପରେ ସେ ଟିକିଏ ଅଭିମାନିଆ କଣ୍ଠରେ କହିଲା, "ପଥର ଭାଇ, ଆଜି ତ କଣ ମୋ ସାଙ୍ଗରେ ପଦେ କଥା ବି କହୁନ ।"

"ଓହୋ !" କୁମ୍ଭୀର ଭାବିଲା, "ଆଚ୍ଛା, ତାହେଲେ ପଥର ମାଙ୍କଡ଼ଟା ସାଙ୍ଗରେ ନିତ କଥା ହୁଏ ପରା ! ତାର ହେଇ ମୁଁ ଇ ଜବାବ୍ ଦଏଁ ଆଜି । ସେଥିରୁ ସେ ପାଟିକଲା, "ମୋର ଭୁଲ ହେଇଗଲା ଭାଇ । ଶୋଇପଡ଼ିଥିଲି ଯେ ତମ କଥା ଶୁଣିପାରିଲିନି ।"



ନାଦ୍ରୁସ୍ତ ଏବେ ବୁଝିଲା ଯେ ଯୋଉଟା ପଥର ପରି ଦିଶୁଥିଲା ସେଇଟା ଆଉ କିଛି ନୁହେଁ, ଗୋଟାଏ ମସ୍ତବଡ଼ କୁମ୍ଭୀର । ତା ଦେହଟା ପାଣି ଭିତରେ ରହିଚି, ଆଉ ତାର ଲମ୍ବ ମୁହଁଟା ଆଉ ଦେହରୁ କିଛି ସେ ପଥର ଉପରେ ରହିଚି । ସେ ପାଟିକରି କହିଲା, "ତୁ ମୋ ସାଙ୍ଗ ପଥର ନୁହଁ ! ତୁ ତ ଗୋଟାଏ କୁମ୍ଭୀର ! ତୋର କଣ ଦରକାର ?"

ଚାଲକ ଯୋଗୁ ଧରା ପଡ଼ି ଯିବାରୁ କୁମ୍ଭୀର ରାଗି ନିଆଁ ହୋଇଗଲା । ସେ ରାଗିକରି କହିଲା, "ମୁଁ ତତେ ଖାଇବାକୁ ଚାହେଁ ।"



ଆଉ ତ ଫେରିବାକୁ ବାଟ ନାହିଁ । ନାଦ୍ରସ୍ମ ଭାବିଲା, ଖାଲି ଗୋଟିଏ ଉପାୟ ହେଉଛି କୁମ୍ଭୀରକୁ କେମିତ ଚ୍ଛରୁଖରେ ହରେଇବ । ତେଣୁ ସେ କହଲା, "ମୋର ତ ଆଉ ଉପାୟ ନାହିଁ । ମୁଁ ଠିକ୍ କରଛ ତୋ ପାଖରେ ନଜକୁ ସମର୍ପଣ କରବ । ମୁଁ ଏଇଲ କୁଦା ମାରବ । ପାଟିଟାକୁ ଆଁ କର ରଖିଥା, ମତେ ଗିଳବୁ । ତେବେ ହଁ, ଆଖି ଦଟା ବନ୍ଦ କରଥିବୁ । ନ ହେଲେ କେଜାଣି ଭୁଲ୍ ଉଟକାରେ ଯେବେ ତୋ ପାଟିରେ ନ ପଡ଼ ତୋ ମୁଣ୍ଡ ଉପରେ ପଡ଼ଯାଏ, ତୋର ଆଖିଦଟା କଣା ହୋଇଯିବ ।"

କୁମ୍ଭୀର ବୋକାଟା ଆଁ ଟାଏ କର ଆଖି ଦଟା କଷିକର ବନ୍ଦ କରଦେଲା । ନାଦ୍ରସ୍ମ ପହଲେ ଟିକଏ ଡରୁଥଲା, ତାପରେ ସାହସ କର ସେ ଏମିତ ଡେଇଁଲା ଯେ କୁମ୍ଭୀରର ପିଠିରେ ଯାଇ ପଡ଼ଲା । ତା ଖୋଲା ପାଟିରୁ ଯେତେ ଦୂରରେ ପାରେ ସେଠି ପଡ଼ କୁମ୍ଭୀରର ପଥର ପରକା ଟାଣୁଆ ପିଠିଟା କାମରେ ଲଗାଇ, ସେଠୁ କୁଦାଟାଏ ମାର ଆସ୍ରମରେ ଆର



କୂଳରେ ପହଞ୍ଚିଲା ଓ ଗୋଟାଏ ଗଛ ଉପରକୁ ଚଢ଼ିଗଲା । "ଆଜି ତୋ ଭୋଜନ ହବାକୁ ମନ ହଉନି"—ସେ ଖତେଇ ହେଇ କହିଲା, "ଆଜି ତୋ ନିଜ ଲାଙ୍ଗୁଡ଼ଟି ଗିଳିଥାରେ ବୁଢ଼ା ।"

ଏମିତି କେତେ ବର୍ଷ ଗଲା । ଦଳର ନେତା ମରିଯିବାରୁ ନାଘ୍ରସ୍ୱ ନୂଆ ନେତା ହୋଇ ବଛାଗଲା, କାରଣ ସମସ୍ତଙ୍କର ଏକାକଥା—ନାଘ୍ରସ୍ୱର ବୁଦ୍ଧିଟା ଯେମିତି ସରସ ସାହସଟା ବି ସେମିତି ବଡ଼ ।

ଯୋଉ ଜାଗାରେ ଦଳଟି ରହୁଥିଲା ସେଠି ବେଶି ଫଳଗଛ ନ ଥିଲା । ତେଣୁ ନାଘ୍ରସ୍ୱ ଠିକ୍ କଲା ସମସ୍ତେ ସେଇ ଆମ୍ବଗଛଭରା ପଠାକୁ ଯେମିତି ଚାଲିଯାନ୍ତି । ବୁଢ଼ା ବୁଢ଼ା ମାଙ୍କଡ଼ମାନେ ଏବେବି ବିଶ୍ୱାସ କରୁନଥିଲେ ଯେ ନାଘ୍ରସ୍ୱ ଯେତେ କହୁଚି ପଠାଟା ସତରେ ଏତେ ଭଲ । କିନ୍ତୁ ନୂଆ ଜାଗାକୁ ଯିବା କଥା ଶୁଣି ଟୋକାଏ ଡେଇଁଲେ ।



ଦଙ୍ଗଲଟି ଯେତେବେଳେ ଯିବାକୁ ଠିକ୍ କଲା ସେତେବେଳକୁ ଖରାଦିନ ଆସିଗଲାଣି । ଦେଖିବାକୁ ଗଲେ ଏଇଟା ତାଙ୍କ ଲାଗି ସୁବିଧା ବି ହେଲା; କାହିଁକନା, ନଈଟା ପ୍ରାୟ ଶୁଖିଲା ଥିଲା, ଆଉ ଶୁଖିଲା ନଈ ଭିତରେ ଢେର୍ ପଥର ଉପରକୁ ଉଠିଥିଲା । ଫଳରେ ବୁଢ଼ା ମାଙ୍କଡ଼ ଯାକ ବି ଅକ୍ଳେଶରେ ପାର ହୋଇଗଲେ । ଏମିତି ଏମିତି ଯେତେବେଳେ ସେମାନେ ପଠାରେ ପହଞ୍ଚିଗଲେ, ଏପରିକି ଯୋଉ ବୁଢ଼ାମାଙ୍କଡ଼ଙ୍କର ଏତେ ଅବିଶ୍ୱାସ ଥିଲା ସେମାନେ ବି ମାନିଲେ, ଜାଗାଟା ବଢ଼ିଆ ।

କିନ୍ତୁ କିଏ ଜାଣିଥିଲା ଏତେ ବଡ଼ ବିପଦ ସେଠି ରହିଚି ?

ଖରାଦିନ ଯେତିକି ବଢ଼ିଲା, ଗରମରେ ତାଙ୍କ ତଣ୍ଟି ଶୁଖିଗଲା ଆଉ ମାଙ୍କଡ଼ମାନେ ଥରକୁ ଥର ପାଣି ପିଇବାକୁ ନଈକି ଓହ୍ଲେଇଲେ । ତହିଁକି ପୁଣି ନଈଟା ଶୁଖି ଶୁଖି ଆସିଲା ବଡ଼ ଜଲ୍ଦି । ଗୋଟାଏ ପାଣି ଧାର ଭାଗ ଭାଗ ହୋଇ ଛୋଟିଆ ଛୋଟିଆ ମନ୍ଦାରେ ପରିଣତ ହୋଇଗଲା । ସେଇ ମନ୍ଦା ଗୁଡ଼ାକ ବି ତା ପରେ ପରେ ହୋଇଗଲା ଯେମିତି ଗୋଳିଆ



ତଳିଆ ପାଣିର ମନ୍ଦା । ଶେଷକୁ ସେଗୁଡ଼ାକ ବି ଶୁଖିଆସିଲା । ଯେତେବେଳେ ତାଙ୍କର ସେଇ ଚହ୍ଲା ଜାଗାଟାରେ ପାଣି ନ ମିଳିଲା, ଯୋଉ ଜାଗା ଦେଇ କରି ସେମାନେ ପାରି ହୋଇଥିଲେ ତାକୁ ଗୁଡ଼ି ଜଙ୍ଗଲର ମାଙ୍କଡ଼ମାନେ ନଈର ଉପର ଆଡ଼କୁ ପାଣି ଖୋଜି ବାହାରିଲେ ।

ସେମାନେ ନଈର ଉପର ମୁଣ୍ଡ ବାଙ୍କ ପାଖରେ ଆସି ପହଞ୍ଚିଲେ । ସେଠି ଦେଖିଲେ କୂଳ ଡାଲୁ ହୋଇଛି ଆଉ ତା ତଳକୁ ଗୋଟିଏ ବଡ଼ ଗଣ୍ଡ ରହିଛି । ତହିଁରେ ଏବେ ବି ଢେର୍ ପାଣି ରହିଅଛି ।

ଯୋଉ ମାଙ୍କଡ଼ ଟୋକାଏ ଗଣ୍ଡଟା ଅଗ ଦେଖିଥିଲେ, ସେମାନେ ଖୁସିଟାଏ ହୋଇ



ପାଣି ପିଇବାକୁ ପାଣି ଧାରକୁ ଧାଇଁଯାଉଥିଲେ । ଏତିକିବେଳେ ତାଙ୍କ ଭିତରୁ ଜଣେ ଅଟକେଇଲା, 'ରହ' । ସେମାନେ ପଚାରିଲେ, "କଥା କଣ ?" ଓଁ କି ଚୁଁ ନକରି ମାଙ୍କଡ଼ଟି ପାଣିକଡ଼ର ଓଦା ବାଲି ଆଡ଼କୁ ଦେଖାଇଦେଲା । କେତେ ଛୋଟ ଛୋଟ ଜୀବଙ୍କ ପାଦଚିହ୍ନ, କୋଉଟି ଠେକୁଆ, କୋଉଟି ହରିଣର ପଡ଼ିଛି । କିନ୍ତୁ ସବୁତକ ପାଣି ଆଡ଼କୁ ରହିଛି, ଫେରିବାର ଚିହ୍ନ ଦେଖିବାକୁ ମିଳୁନାହିଁ । ତା ମାନେ, ପାଣି ପିଇକରି କେହି ଆଉ ଫେରନ୍ତି । କୋଉଠି ଗୋଟାଏ କିଛି ଗୋଳମାଳିଆ କଥା ରହିଛି ! ସେମାନେ ଠିକ୍ କଲେ, କଥାଟା ନାଦ୍ରସ୍ କାନକୁ ଆଣିବା ଦରକାର ।

ନାଦ୍ରସ୍ ଆସି ପାଦଚିହ୍ନ ଯାକ ନିରେଖି ଚାହିଁଲା, ଗଣ୍ଡଟାକୁ ବି ଭଲକରି ଦେଖିଲା । ଛୋଟ ଛୋଟ ବାଉଁଶକଣି କି ବେତ ପରି ଗୁଡ଼ାଏ ବଣୁଆ ଗଛ ବଢ଼ିଛି ସେ ଗଣ୍ଡ ପାଖରେ । ଖୁବ୍ ନିଘେଇ ଚାହିଁବାରୁ ସେ ଦେଖିପାରିଲା ତାର ପୁରୁଣା ଦୁଶ୍ମନ ସେଇ କୁମ୍ଭୀରଟା ସେଇ



କଣ୍ଟା ବଣ ପାଖରେ ଅଜବ କଣ ରହିଛି । ତାର ଲମ୍ବା ମୁଣ୍ଡଟା ଆଉ ଶୁଣ୍ଢଟା ବି ଦେଖି-ପାରିଲା ସେ ।

କୁମ୍ଭୀର ବି ବୁଝିପାରିଲା ସେ ଧରାପଡ଼ିଗଲାଣି । ଆଉ ଲୁଚି ଲାଭ ନାହିଁ ଜାଣି ସେ ପାଟିକରି କହିଲା, "ଯେମିତି ହେଉ ତମେ ମାଙ୍କଡ଼ଯାକ ଏଥର ମରିବ । ଏଠିକି ଯୋଉ ଜନ୍ତୁ ପାଣି ପିଇବାକୁ ଆସେ ମୁଁ ତାକୁ ଖାଏ । ସେମିତି ତମମାନଙ୍କୁ ବି ଖାଇବି । ଆଉ



ଯେବେ ପାଣି ନପିଇବ ଡମେଗୁଡ଼ାକ ଶୋଷରେ ଶୁଖି ମରିବ । ମୋ ଗଣ୍ଡକୁ ଗୁଡ଼ିଦେଲେ ଆଉ କୋଉଠି ପାଣି ନାହିଁ । ଦୁ ମାସ ପରେ ବର୍ଷା ଆସିବ । ନହେଲେ ଏଇ ଅବସ୍ଥା ରହିବ ।"

କେତେବେଳଯାଏ ନାଦ୍ରସ୍ସ କଣ କରିବ ବୁଝି ପାରିଲାନି । ଏଣେ ମାଙ୍କଡ଼ମାନଙ୍କର, ବିଶେଷ ଛୁଆଗୁଡ଼ାକଙ୍କର, ଶୋଷରେ ହଁସା ଉଡ଼ିବାକୁ ବସିଲାଣି । ସେଇଠୁ ତା ମୁଣ୍ଡକୁ ଗୋଟାଏ ବଢ଼ିଆ ଉପାୟ ଆସିଗଲା ।

"କୁମ୍ଭୀରଠୁଁ ଦୂରେଇ କରି ନଈ କୂଳେ କୂଳେ ଖୋଜିଯାଅ । କଣ୍ଡାରୁ ଲମ୍ବା ଦେଖି କିଛି ଓପାଡ଼ ଆଣ ।" ନାଦ୍ରସ୍ସ ଦଙ୍ଗଲକୁ ହୁକୁମ୍ ଦେଲା । ଆପେ ବି ଗୋଟାଏ ବଡ଼ କଣ୍ଡା ଦେଖି ଘିନିଆସିଲା । ତା ଉପରର କଅଁଳିଆ ଅଂଶରୁ ଖଣ୍ଡେ କାମୁଡ଼ି ଛିଣ୍ଡାଇ ଦେଲା । ତା ପରେ ଉପରୁ ତଳକୁ ଫୁଙ୍କିଲା । କିନ୍ତୁ ତାର ଟିକିଏ ତଳକୁ କରି ଗୋଟାଏ ଗଣ୍ଠି ଥିଲା । ସେ ଆଉ ଗୋଟାଏ କଣ୍ଡା ନେଲା । ଏଇଟାର ଗଣ୍ଠିଟା ବହୁତ ତଳେ । ସେ ଗଣ୍ଠିର ଉପରକୁ କରି କଣ୍ଡାଟାକୁ ଭାଙ୍ଗିଦେଇ ଫୁଙ୍କିଲା । ଆଉ ପବନ ମଝିରେ ଅଟକୁ ନାହିଁ, ଆରପଟେ ଠିକ୍



ବାହାର ଅଦ୍ଭୁତ । ଯୋଉଠି କୁମ୍ଭୀରଟା ଅପେକ୍ଷା କରି ରହିଥିଲା ତାଠୁଁ ପାବୁପର୍ଯ୍ୟନ୍ତେ ଦୂରରେ ନାଡ଼୍‌ସ୍ବ ସର କଣ୍ଡାର ଲମ୍ବ ଅନୁଯାଂସ୍ଥୀ କୂଳଠୁଁ ଦୂରରେ ଠିଆ ହୋଇ ସର କଣ୍ଡାର ଗୋଟାଏ ପଟ ପାଣିରେ ବୁଡ଼ାଇ ଆରପଟୁ ଶୋଷିଲା । ପାଣି ସେଇ ନାଡ଼ ଦେଇ ଉଠି ଆସି ତା ଶୁଖିଲା ତଣ୍ଟି ଭିଜାଇଲା । ସେଇଠୁ ସେ ଅନ୍ୟ ମାଙ୍କଡ଼ଙ୍କୁ ଡାକି ସେଇ ସ୍ବଭରେ ପାଣି ପିଇବାକୁ କହିଲା ।

କୁମ୍ଭୀର ରାଗିଯାଇ ମାଙ୍କଡ଼ ଗୁଡ଼ାଙ୍କ ଆଡ଼କୁ ଫୁତ୍କାର ଆସେ । ଆଉ ବଗୁଲିଆ ମାଙ୍କଡ଼ ଛୁଆଯାକ ତାକୁ ଖତେଇ ବଗୁଲେଇ ହଉଥାନ୍ତି । ସେ ପାଖକୁ ଆସିଲେ ପଳାନ୍ତି । ମୋଟା, ଓଜନିଆ ଜନ୍ତୁଟା, ଜଲ୍‌ଦି ଜଲ୍‌ଦି ଖେଦି ପାରୁ ନଥାଏ । ଗୋଟାଏ ମାଙ୍କଡ଼କୁ ଲକ୍ଷ୍ୟ କରି ଛୁଟି ଗଲାବେଳକୁ ସେ ପାଣି ପିଇସାରି ଗଛ ଉପରକୁ ଚଢ଼ିଗଲାଣି । ଥରେ ଦିଥର କୁମ୍ଭୀର କଣ୍ଡା ଗୁଡ଼ାକ କାମୁଡ଼ି ବଦାରି ଫୋପାଡ଼ି ଦେଲା ଅବଶ୍ୟ, କିନ୍ତୁ ମାଙ୍କଡ଼ମାନେ ଆଉ ଆଉ ଜାଗାକୁ ଯାଇ ନୂଆ ନୂଆ ନାଡ଼ ଧରି ପାଣି ପିଇବାକୁ ଲାଗିଲେ । ବୋକା କୁମ୍ଭୀରଟା ଖୁବ୍ ପାଣି ଛାଟି ମାଙ୍କଡ଼ଙ୍କୁ ଗୋଡ଼େଇଲା । କିନ୍ତୁ ଖୁବ୍ ଶୀଘ୍ର କ୍ଳାନ୍ତ ହୋଇ ଅସହାୟ ରାଗରେ ସେମାନଙ୍କ ଆଡ଼କୁ ଚାହିଁ କାଠଗଡ଼ଟା ପରି ପଡ଼ିରହିଲା ।

ମାସ ଦିଟା ନ ଯାଉଣୁ ବର୍ଷା ହୋଇଗଲା । ମାଙ୍କଡ଼ଙ୍କୁ ଆଉ ସେ ଗଣ୍ଡକୁ ଯିବାକୁ ହେଲାନି । ଯୋଉଠି ଇଚ୍ଛା ସେଠି ପିଇବାକୁ ଢେର୍ ପାଣି ନଈରେ ସେତେବେଳକୁ ।

ଅଧିକାଂଶ ଆମ୍ବ ଗଛ ପଠାର ମଝି ଆଡ଼କୁ ଥିଲା—କୂଳଠୁଁ ଦୂରରେ । କିନ୍ତୁ ଗୋଟାଏ ଗଛ ଏକବାରେ ନଈର କୂଳକୁ ଲାଗି ହୋଇଥାଏ । ପଥରଟାଠୁଁ ଦୂରରେ, ନଈର ଆରକୂଳ ଆଡ଼କୁ ମୁହାଁଇଥିବା ଏକ ଧେଣ୍ଡରେ ଗଛଟି ଠିଆହୋଇଥାଏ । ତାର ଗୋଟିଏ ଅଗ-



ଡାଳ ଖୁବ୍ ଲମ୍ବା ଆଉ ଆରକୂଳକୁ ଜାଣି ଛୁଇଁ ରହିଥିଲା । ଡାଳଟା ବଲ୍‌କୁଲ୍ ଥୁଣ୍ଟା— ପତ୍ର ନାହିଁ କି ଫଳ ନାହିଁ । ତେବେ ତାହାର ତଳକୁ କରି ଗୋଟେ ନୂଆ ଡାଳ ଜଅଁଳିଥିଲା ଯେ, ତହିଁରେ ପତ୍ର ବୋଝେଇ ହୋଇଛି । ବଉଳିବା ବେଳ ହେଲରୁ ତହିଁରେ ବଉଳ ବୋଝେଇହୋଇଗଲା ।

ନାଦ୍ରସ୍କୁ ଲାଗିଲା, ଯେବେ ଏ ଡାଳରେ ଫଳ ଧରେ, ତାହେଲେ ଦଳ ଉପରକୁ ବିପଦ ଆପଦ ଆସିପାରେ । କାହିଁକନା, କିଛି ପାଚିଲା ଫଳ ଝଡ଼ି କରି ନଈରେ ଭାସି ଭାସି ନଈର ତଳଆଡ଼କୁ ଚାଲିଯାଇପାରେ । ଏ ଛୋଟ ନଈଟା କୋଉ ବଡ଼ ନଈରେ ମିଶିଥିବ । ସେ ନଈ କୂଳରେ ଗାଁଗଣ୍ଡା କି ସହର ବି ଥାଇପାରେ । ସେଥିରୁ ଯେବେ ଅମ୍ବଟାଏ କୋଉ ଲୋକ ହାତରେ ପଡ଼ିଯାଏ ସେମାନେ ଏଇ ଆମ୍ବ ତୋଟା ଖୋଜି ଖୋଜି ଏଠିକି ଆସି ହାଜର ହେବେ, ଆଉ ମାଙ୍କଡ଼ ପଲ୍ଟାକୁ ଘଉଡ଼େଇଦେବେ ।

ତେଣୁ ସମସ୍ତଙ୍କୁ ଡାକି ସେ କହିଲା ଯେ ଏଇ ଡାଳରେ ଯେତେ ଫଳ ଧରିବ, ସେମାନେ ଖାଇଯିବେ । ଫଳଯାକ କଷିବେଳୁ ହିଁ ଖାଇଦେଲେ ଆଉ କିଛି ବିପଦ ନ ଥିବ । ତା କଥା ମାଙ୍କଡ଼ମାନେ ଅକ୍ଷରେ ଅକ୍ଷରେ ପାଳନ କଲେ ।



କିନ୍ତୁ ସେଇ ଡାଳ ଅଗରେ ଗୋଟିଏ କାଇବସା ଥିଲା । ତା ସେକଡ଼େ, ଆଢୁଆଳରେ ଗୋଟିଏ ଆମ୍ବ ବଢ଼ିରୁ ବଢ଼ି ହେଲା ଓ ପାଚିଗଲା । ମାଙ୍କଡ଼ମାନେ ଡାଳ ଅଗକୁ କାଇଙ୍କ ଡରରେ ଯାଉ ନଥିଲେ, ଆଉ ଆମ୍ବଟାକୁ ବି କୂଳଆଡୁ ଦେଖିବା ଦୁଷ୍କର ଥିଲା ।

ଆମ୍ବଟା ପାଚିଯାଇ ନଈ ପାଣିରେ ପଡ଼ିଗଲା ଓ ସୁଅରେ ଭାସିକରି ବଡ଼ ନଈସାଙ୍ଗେ ମିଶିଗଲା । ଯାଇ ଯାଇ ପହଞ୍ଚିଗଲା ଖାସ୍ କରି ରାଜାଙ୍କ ଘାଟରେ । ସେଇ ନଈକୂଳରେ ରଜାଙ୍କ ଉଆସ । ଫଳଟା ଏବେ ବି ତାଜା ଅଛି । ରାଜା ତାହା ଖାଇଲେ । ଏମିତି ମିଠା ଆଉ ବଢ଼ିଆ ବାସନା ଆମ୍ବ ସେ ଜୀବନରେ ଖାଇ ନ ଥିଲେ ।

ଅତି ହସ୍ତାହ୍ୱତ ହୋଇ ରାଜା ଠିକ୍ କଲେ ଯେ ସେଇ ଗଛଟାର ସନ୍ଧାନ ନିଶ୍ଚୟ କରିବାକୁ ହେବ ।



ଯେମିତି ହେଲେ ବାହାର କରିବାକୁ ହେବ ଏତେ ସୁଆଦିଆ ଫଳ କୋଉ ତୋଟାରେ ହୁଏ । ଦଳେ ପାଇକ ଧରି ଗୋଟିଏ ନାଆରେ ବସି ସେ ଚାଲିଲେ । ଓଲଟ ସୁଅରେ ନାଆ ବାହି ସେମାନେ ସେଇ ଶ୍ରେଷ୍ଠ ନଈର ମୁହାଣ ପାଖକୁ ପଳେଇ ଆସିଲେ, ଆଉ ସେଇଠୁ ଠିକ୍ କଲେ ତା କୂଳ ବି ଖୋଜିବେ । ଏଇମିତି କରି ସେମାନେ ଶେଷକୁ ସେଇ ପଠା ପାଖକୁ ଆସିଗଲେ ।

ରାଜା ଦେଖିଲେ ପଠାଟାଯାକ ମାଙ୍କଡ଼ ଭର୍ତ୍ତି । ସେ ସେଇକ୍ଷଣି ମାଙ୍କଡ଼ଗୁଡ଼ାଙ୍କୁ ଶିକାର କରି ସାବାଡ଼୍ କରିବାକୁ ଚାହୁଁଥିଲେ, କିନ୍ତୁ ଅନ୍ଧାର ହୋଇ ଆସିଥିବାରୁ ସେଦିନଟା ରହିଗଲେ । ସେ ପାଇକଙ୍କୁ କହିଲେ, "ଯୋଉ ଗଛରେ ସବୁ ବେଶି ଆମ୍ବ ହେଇଚି ତାକୁ ଜଗିକରି ଛିଡ଼ା ହୋଇଥାଅ । ମାଙ୍କଡ଼ ଯେମିତି ଆଜି ଫଳ ଶେଷ ନ କରନ୍ତି । କାଲି ଭୋରୁ ଦଳଟାଯାକ ମାଙ୍କଡ଼ଙ୍କୁ ଘଉଡ଼େଇ ଦେବାକୁ ହେବ ।"

ଗୋଟିଏ ମାଙ୍କଡ଼ଟୋକା ଗଛ ଉପରେ ଥାଇ ରାଜାଙ୍କ କଥାତକ ଶୁଣୁଥିଲା । ସେ ଚୁପ୍‌ଚାପ୍ ଏଡାଳରୁ ସେଡାଳ ଡେଇଁ ଡେଇଁ ଆସି ନାଦୁସ୍ତ ଯୋଉ ଜାଗାରେ ରାତିରେ ଶୁଏ ପଠାର ସେଇ ଜାଗାକୁ ଚାଲିଆସିଲା । ସବୁ କଥା କହି ସାରି ମାଙ୍କଡ଼ଟି ନିରାଶ ହୋଇ ପଚାରିଲା, "କଣ କରିବା କହିଲ ? କାଲି ତ ଆମକୁ ଏଠୁ ଘଉଡ଼େଇ ଦିଆଯିବ । ଆମ ଭିତରୁ କେହି କେହି ହୁଏତ ଖଣ୍ଡିଆଖାବରା ବି ହୋଇପାରନ୍ତି ବା ମରିଯାଇପାରନ୍ତି ।"



ନାଦ୍ରସ୍ୱ ଅନେକ ସମୟଯାକେ ଭାବିଲ ସମସ୍ୟାଟା ନେଇ । ତାପରେ କହିଲ, "ମୁଁ ଖଞ୍ଜିଚ ଗୋଟାଏ ବାଟ ରହିଚ ଖସିଯିବାକୁ । ଯା ତ ସମସ୍ତଙ୍କୁ କହିଦେ, ଘଣ୍ଟାକ ଭିତରେ ଆସି ପଠାର ଆଗପଟେ ଥିବା ସେଇ ଥୁଣ୍ଟାଡାଳବାଲା ଗଛଟା ପାଖରେ ହାଜର ହେଇଯାନ୍ତୁ ।"

ନଈଟା ଦହଲ ଖାଉଚି । ବର୍ଷା ଦିନ । ଯୋଉ ପଥରଟା ଦେଇ ମାଙ୍କଡ଼ମାନେ ଆଗ ପଠାକୁ ଆସିଥିଲେ ସେଇଟା ଉପରେ କେତେ ମିଟର ପାଣି ଗଳୁଚି । ତେଣୁ ସେବାଟେ ପଳାଇବାର ଉପାୟ ନାହିଁ । ସେଇଠୁ ନାଦ୍ରସ୍ୱ ଆଗପଟର ସେଇ ଏକୁଟିଆ ଗଛଟା ପାଖ ଗଲ, ତା ଉପରେ ଚଢ଼ିଲ ଓ ହୁସିଆର ହୋଇ ସେଇ ଦରମଲା ଡାଳଟାରେ ଗଳିଲ । ତା ଅଗଯାକେ ଆସିକଣ କୂଳଠୁଁ ତାର ଦୂରତାଟା ଦେଖିଲ । ତାକୁ ଲାଗିଲ, ସେ ହୁଏତ ଏତକ ଦୂର ଡେଇଁ ଯାଇପାରିବ । ସେଠୁ କୁଦାଟାଏ ମାରି ସେ ଆର କୂଳର ଗୋଟେ ଗଛ



ଡାଳରେ ହଗପଦରେ ଓହ୍ଲାଇଲା । ତାପରେ ତାର ଡଆଁର ଲମ୍ବଟା ମାପି ସେଇ ମାପର ଗୋଟିଏ ସରୁ ଅଥଚ ମଜଭୁତଆ ବାଉଁଶ ଓପାଡ଼ି ଆଣିଲା । ଏଇ ବାଉଁଶଠୁଁ ଅଧିକ ଲମ୍ବ ବାଉଁଶ ସେଠି ଆଉ ନଥିଲା । ତାପରେ ନଈର ସେକୂଳରେ, ଯୋଉ ଗଛଲୁ ଡେଇଁ ସେ ଆସିଥିଲା, ସେଇ ଗଛର ନଈଆଡ଼କୁ ବଢ଼ିଥିବା ଡାଳ ଅଗରେ ବାଉଁଶଟାକୁ ବାନ୍ଧିଦେଲା କଷିକରି । ତାପରେ ଅତି ସାବଧାନ ହୋଇ ସେ ବାଉଁଶଟା ଉପରେ ଚଢ଼ିଲା । ବାଉଁଶଟା ସରୁ ଆଉ ଚିକ୍କଣ ହୋଇଥିବାରୁ ଏତକ କରିବା କାଠିକର ପାଠ ଥିଲା । ତେବେ କୌଣସି ରକମ ସେ ଚଢ଼ିପାରିଲା । ବାଉଁଶ ଅଗରେ ପହଞ୍ଚି ସେ ନିଜ ଅଣ୍ଟାରେ ବାଉଁଶଟାକୁ ଭଲକରି ବାନ୍ଧିଦେଲା, ତାପରେ ବାଉଁଶର ଅଗଟାକୁ ସେ ଦୋହଲେଇ ଲାଗିଲା ଏଆଡ଼କୁ ସେଆଡ଼କୁ କରି । ବାଉଁଶଟା ବଡ଼ରୁ ବଡ଼ ବୃପ କାଟି ଦୋହଲୁଥାଏ ଆରପାରି ଅଣ୍ଡାଡାଳିଆ ଗଛଟା ଆଡ଼କୁ । ଏମିତି କରିବାରେ ବିପଦ ଥିଲା ଖୁବ୍; କାହିଁକି ନା ଯେକୌଣସି ମୁହୂର୍ତ୍ତରେ ନାଢ୍ରସ୍ୱ ବାଉଁଶଟାରୁ ଖସିଯାଇ ତଳର ସୁଅତୋଡ଼ରେ ପଡ଼ି ବୁଡ଼ି ମରିପାରେ । କିନ୍ତୁ ତା ଭାଗ୍ୟ ଭଲ ।



ଯେତେବେଳେ ଦୋହଲି ଦୋହଲି ବାଉଁଶଟା ଆସି ସେଇ ଅମ୍ଳା ଡାଳ ମାଝରେ ହେଲା, ନାଦ୍ରୁସ୍ୱ ସେ ଡାଳଟାକୁ ଧରିପକାଇଲା ।

ତାର ଉଦ୍ଦେଶ୍ୟ ଥିଲା ସ୍ଥାପରେ ସେ ଅଣ୍ଡାରୁ ବାଉଁଶଟା ଫଟାଇ ସେଇ ଡାଳରେ ବାନ୍ଧିନବ । ଫଳରେ ଗୋଟାଏ ସରୁ କିନ୍ତୁ ନିମ୍ନପଦ ପୋଲ ହେଇଯିବ, ଏ ପଠାରୁ ସେ କୂଳଯାକେ । କିନ୍ତୁ ସେ ଦେଖିଲା, ତାର ମାପ ଟିକିଏ ଭୁଲ ହୋଇଛି । ବାଉଁଶଟା ଗ୍ରେଷ୍ଟ ହେଲ ମିଟରେ ଖେଣ୍ଡେ । ଏତକ ଛଫାନ୍ଥ. ହେଲା ତାର ଅଣ୍ଡାଠାରୁ ହାତଯାଏ । ସେ ଯେବେ ବାଉଁଶଟାକୁ ଏଇଲା ଅଣ୍ଡାରୁ ଫିଟେଇ ଦିଏ, ତାହେଲେ ବାଉଁଶଟା ପୁଣି ଛୁଟିକି ଉପରକୁ ଉଠିଯିବ । ସେ ଭାବୁଥାଏ, ପୁଣି ଥରେ ଯୋଗାଡ଼ କରିବକି ! ଏତିକି ବେଳେ ସେ ପଠାଟାରେ ଖୁବ୍ ଗଣ୍ଡଗୋଳ ଶୁଣିବାକୁ ପାଇଲା । ରାଜାଙ୍କର ପାଇକମାନେ ଆଉ ଭେରଯାକେ ଅପେକ୍ଷା ନକରି ସିଧା ଶିକାର ଆରମ୍ଭ କରିଦେଇଚନ୍ତି । ଯେ ବୁଝିଲା, ତା ଦିହଟାକୁ ବର୍ତ୍ତମାନ ପୋଲର ଅଂଶ ଭାବରେ ବ୍ୟବହାର ନ କରି ଅନ୍ୟ ଗତି ନାହିଁ ।



ସେ ଆଦେଶ କରି ମାଙ୍କଡ଼ମାନଙ୍କୁ ଡାକିଲା । ସେମାନେ ତଳେ ଜମା ହୋଇଥିଲେ । ନାନ୍ଦ୍ରସ୍ତ କହିଲା, ସେମାନେ ଯେମିତି ବର୍ତ୍ତମାନ ଆରକୂଳକୁ ଚାଲି ଯାନ୍ତୁ । ସଂଖ୍ୟାରେ ସେମାନେ ବହୁତ ବେଶି । ଟିକିଏ ପରେ ନାନ୍ଦ୍ରସ୍ତକୁ କଷ୍ଟଟା ବୁଝାପଡ଼ିଲା । ସେ ତ ଆଉ ଯୁବକ ନୁହେଁ, ବେଶ ବୁଢ଼ା ହୋଇଯାଇଛି । ତାର ଶରୀରଟା ବି ଦୁର୍ବଳ । ହଠାତ୍ ତା ଶରୀରରେ ଗୋଟାଏ ଅସହ୍ୟ ଯନ୍ତ୍ରଣା ସେ ପାଇଲା । ସେ ଜାଣିଲା, ଏଇଲାଗେ ଯେବେ କିଏ ତା ଉପରେ ଚଢ଼ିଯାଏ, ସେ ମରିଯିବ । କିନ୍ତୁ ଆଉ ଗୋଟିଏ ମାତ୍ର ମାଙ୍କଡ଼ ବାକି । ସେ ବି ମାଉଟିଏ, ଦୁଇଟା ଛୁଆ ତାର, ତାକୁ ଜୋରରେ ଜାବୁଡ଼ି ଧରିଛନ୍ତି । ନାନ୍ଦ୍ରସ୍ତ ଦାନ୍ତ ଚିପି, ତାର କଷ୍ଟ ହେବାର କୌଣସି ଲକ୍ଷଣ ନ ଦେଖାଇ ତାକୁ ଜଲ୍ଦି ଚାଲି ଯିବାକୁ ଫୁସ୍ ଫୁସ୍ କରି କହିଲା ।

ମାଉମାଙ୍କଡ଼ଟି ଆରକୂଳରେ ନିରାପଦରେ ପହଞ୍ଚିବା ପରେ ପରେ ଦୁର୍ଘଟଣାଟା ଘଟିଲା । ଯୋଉ ଗଣ୍ଡିରେ ବାଉଁଶଟି ସେପାରି ଗଛରେ ବନ୍ଧା ହୋଇଥିଲା, ତା ଉପରେ ଜୋର୍ ପଡ଼ୁଥିଲା ଖୁବ୍; କାହିଁକିନା ଗୋଟିକ ପରେ ଗୋଟିଏ ମାଙ୍କଡ଼ ଯାଇ ଯାଇ ତାଙ୍କ ଓଜନ ଅନେକ ବେଳ ସେ ସମ୍ଭାଳିଥିଲା । ହଠାତ୍ ସେଇ ଗଣ୍ଡିଟା ଛିଣ୍ଡିଗଲା, ଆଉ ମୂର୍ଚ୍ଛିତ ପ୍ରାୟ ନାନ୍ଦ୍ରସ୍ତ ଛିଟିକିଯାଇ ମାଟି ଉପରେ କଚାଡ଼ିହୋଇ ପଡ଼ିଗଲା ।

ସମସ୍ତଙ୍କ ଅଜଣାରେ, ରାଜା ବେଶ୍ କିଛି ବେଳ ସେଇଠି ଠିଆହୋଇ ସବୁ ଦେଖୁଥିଲେ । ଜହ୍ନ ଆଲୁଅ ଫିକା ପଡ଼ି ଆସିଥିଲା, ଫଳରେ ସେ ଭଲକରି କିଛି ଦେଖିପାରୁ ନଥିଲେ । କିନ୍ତୁ ଏତିକି ଦେଖୁଥିଲେ ଯେ ମାଙ୍କଡ଼ମାନେ ପଠା ଛାଡ଼ି ଚାଲି ଯାଉଛନ୍ତି । ଏଇଆ ହିଁ ସେ ଚାହୁଁଥିଲେ; ତେଣୁ ବେଶ୍ ସନ୍ତୋଷରେ ସେ ଏ କାଣ୍ଡ ଦେଖୁଥିଲେ । ନାନ୍ଦ୍ରସ୍ତ ଯେତେବେଳେ ଅଣ୍ଟାର ବାଉଁଶ ସମେତ ତଳେ ପଡ଼ିଗଲା, ରାଜା ସେତେବେଳେ ଯାଇ ଜାଣିଲେ ଯେ ପ୍ରକୃତରେ କଣ ହେଉଥିଲା । ନାନ୍ଦ୍ରସ୍ତ ଯୋଉଠି ପଡ଼ିଥିଲା ସେଠିକି ଦଉଡ଼ି ଆସି ସେ ଅତି ଆଦରରେ ତାର ଶୁଶ୍ରୂଷା କଲେ । କିନ୍ତୁ ସେ ବୁଝିପାରିଲେ ଯେ ନାନ୍ଦ୍ରସ୍ତ ମରିବାକୁ ଯାଉଛି ।

"ହେ ହୃଦୟବାନ୍ ବାନର !" ରଜା କହିଲେ, "ମଣିଷଙ୍କ ଭିତରେ ତ ମୁଁ ଏମିତି କାହାରିକି ଦେଖିନି ଯିଏ ଅନ୍ୟପାଇଁ ନିଜକୁ ସମର୍ପି ଦେବ ! ଯେବେ ତମର କିଛି ଶେଷ ଇଚ୍ଛା ଥିବ, କୁହ, ମୋର ଶକ୍ତି ଥିଲେ ମୁଁ ତା ପୂରଣ କରିବ ।"

ଅତି ଦୁର୍ବଳ ସ୍ୱରରେ ନାନ୍ଦ୍ରସ୍ତ ଉତ୍ତର ଦେଲା—"ମୁଁ ମୋ ଦଳଟିକୁ ଖୁସି ଭଲ ପାଏ । ସେମାନଙ୍କର ଯେମିତି କିଛି ଅନିଷ୍ଟ ନ ହୁଏ ।" ଏତିକି କହି ସେ ମରିଗଲା ।

ରାଜା ଯାହା ଦେଖିଲେ, ସେଥିରେ ସେ ଏତେ ବିଚଳିତ ହୋଇଥିଲେ ଯେ, ସେ ସ୍ଥିର କଲେ ପଠାଟାକୁ ଦଖଲ କରିବେନି ଓ ସେଇଟି ମାଙ୍କଡ଼ମାନଙ୍କୁ ଫେରେଇ ଦେବେ । ଖବର ନେବାକୁ ସେ ତାଙ୍କ ପାଇକମାନଙ୍କୁ ହୁକୁମ ଦେଲେ ପଠାରୁ ଆର କୂଳଯାଏ ଗୋଟିଏ

ମଜଭୁତ ବାଉଁଶ ପୋଲ ତିଆରି କରିବାକୁ । ଆଉ ପାଖରେ ଥାଇ ମାଙ୍କଡ଼ମାନେ ଦେଖୁଥାନ୍ତି ସିନା, କିନ୍ତୁ ରାଜାଙ୍କର ମତଲବ କଣ ବୁଝି ପାରୁ ନଥାନ୍ତି । ଯେତେବେଳେ ତାଙ୍କ ନେତାର ସତ୍କାର ସକାଶେ ବନ୍ଦୋବସ୍ତ କରାଗଲା, ସେମାନେ ବୁଝିଲେ ଯେ ତାଙ୍କ ପରି ରାଜା ମଧ୍ୟ ନାନ୍ଦ୍ରସ୍ୱର ମୃତ୍ୟୁରେ ଶୋକ କରୁଛନ୍ତି । ତେଣୁ ସେମାନେ ଦଳ ଦଳ ହୋଇ ଆସି ନାନ୍ଦ୍ରସ୍ୱରକୁ ଶେଷ ସମ୍ମାନ ଦେଇଗଲେ ।

ନାନ୍ଦ୍ରସ୍ୱର ସତ୍କାର ପରେ ରାଜା ସେଇ ପଠାରେ ଗୋଟିଏ ସ୍ମାରକସ୍ତମ୍ଭ ତିଆରି କରାଇଲେ । ତା ତଳେ ପଥରରେ ଖୋଳାଇ ଆଦେଶ ଲେଖାଇଲେ ଯେ—କେହି ଯେମିତି ଏହି ପଠାର ଜଙ୍ଗଲ ନକାଟେ—କାହିଁକନା ପଠାଟା ମାଙ୍କଡ଼ ଦଳଟିର ପ୍ରମୋଦ ଉଦ୍ୟାନ । ରାଜା ଖାଲି ତାଙ୍କ ଉଆସ ବଗିଚାରେ ଲଗାଇବା ଲାଗି କିଛି ଆମ୍ବ ଘେନିଗଲେ । ସେଗୁଡ଼ିକ ସମୟକ୍ରମେ ଫଳ ଧରିଥିବେ ଏବଂ ସେହି ମିଠା ଫଳ ଖାଇଲାବେଳକୁ ତାଙ୍କର ମନେପଡ଼ିଯାଉଥିବ ମହାନ୍‌ହୃଦୟ ନାନ୍ଦ୍ରସ୍ୱର ଆତ୍ମତ୍ୟାଗର କାହାଣୀ ।



